
କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ
ସଟୀକ
ଯମକରାଜ ଚଉତିଶା
ଟୀକାକାର - ଶ୍ରୀ ବିଶ୍ୱନାଥ କର, ବି.ଏ., କୋବିଦ.

[ଓଡ଼ିଶା ଶିକ୍ଷାବିଭାଗ ଦିଗ୍‌ଦର୍ଶକ ମହୋଦୟଙ୍କ ନଂ ୨୪୪୧୦ (୧୧)
ତା ୨-୧୧-୫୭ ଆଦେଶପତ୍ରରେ ଉକ୍ତ ପୁସ୍ତକର ପ୍ରଥମ ସଂସ୍କରଣ ରାଜ୍ୟର
ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କର ପାଠାଗାର ଓ ପୁରସ୍କାର ନିମନ୍ତେ ସ୍ୱୀକୃତ ।]

ଓଁ ଜୟଗୁରୁ

ଜୟଗୁରୁ ପ୍ରତିଷ୍ଠାନର ଅଷ୍ଟମ ଅବଦାନ

# ସଟୀକ ଯମକରାଜ ଚଉତିଶା

(କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ବିରଚିତ)

[ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ)



ଟୀକାକାର :

ଦରଦୀକବି **ଶ୍ରୀ ବିଶ୍ୱନାଥ କର**, ବି. ଏ., କୋବିଦ

ଲେଖକ : ଦରଦୀକବି ଶ୍ରୀ ବିଶ୍ୱନାଥ କର, ବି.ଏ., କୋବିଦ
ଜଗଦ୍‌ଗୁରୁ ପ୍ରତିଷ୍ଠାନ, ଚଉଦ୍ୱାର, କଟକ

ପ୍ରକାଶକ : ଜଗଦ୍‌ଗୁରୁ ପ୍ରତିଷ୍ଠାନ
ଚଉଦ୍ୱାର, କଟକ

ପ୍ରକାଶକାଳ : ପ୍ରଥମ ସଂସ୍କରଣ—୧୫-୭-୬୫
ଦ୍ୱିତୀୟ ସଂସ୍କରଣ—୧୫-୮-୭୨

ପ୍ରଚ୍ଛଦପଟ ଶିଳ୍ପୀ : ଶ୍ରୀ ଘନନାଥ ପାଠୀ
ସେକ୍ରେଟେରିଏଟ୍, ଭୁବନେଶ୍ୱର

ମୁଦ୍ରାକର : ଶ୍ରୀ ରଘୁନାଥ ସାହୁ
ଧୀର ପ୍ରିଣ୍ଟିଂ ୱାର୍କସ୍, କଟକ-୧

ପ୍ରଚ୍ଛଦପଟ ବ୍ଲକ : ଗୋସ୍ୱାମୀ ପ୍ରେସ, କଟକ



ମୂଲ୍ୟ : ଚାରି ଟଙ୍କା

ପ୍ରାପ୍ତିସ୍ଥାନ : ଜଗଦ୍‌ଗୁରୁ ପ୍ରତିଷ୍ଠାନ
ଚଉଦ୍ୱାର, ଜି: କଟକ
ଓ
ବିଦ୍ୟାପୁରୀ, କଟକ-୨

# ଏଇ ଲେଖକଙ୍କର ଲେଖନୀ-ନିଃସୃତ

କବିତା :—

ବିରହ-ବାନ୍ଧବୀ
ପଲ୍ଲୀ ପ୍ରୀତି
ତଳଚଣ୍ଡୁଳ

କାବ୍ୟ :—

ମିଳନ-ମାଧୁରୀ
ସଞ୍ଚାର ଶକ୍ତି

ଅନୁବାଦ :—

ରତ୍ନରେଣୁ
ଋତୁସଂହାର
ମାତ-ନିର୍ଝରିଣୀ
ଅଞ୍ଜଳି
ମଣିରତ୍ନମାଳା
ହଂସଦୂତ

ସଙ୍ଗୀତ :—

ଗୀତଗଣିତ
ଶ୍ରୀ କପାଳେଶ୍ୱର ଚଉତିଶା

ଟୀକା ସଂକଳନ :—

ସଟୀକ ଯମକରାଜ ଚଉତିଶା

ଭ୍ରମଣକାହାଣୀ :—

ଦେଶଦର୍ଶନ

---

**ପ୍ରସ୍ତୁତ ପଥେ :**

କ୍ଷୁଦ୍ରଗଳ୍ପ :

ମାଟି ନୁହେଁ ମା

ଉପନ୍ୟାସ :

ଅଭାଗିନୀର ଅଶ୍ରୁ

ଅନୁବାଦ :

ସ୍ୱପ୍ନବାସବଦତ୍ତା

ନଳୋଦୟ

କବିତା :

କଳ୍ପନାକୁଞ୍ଜେ କବି

---

## ଶ୍ରୀ ଜମ୍ବୁଗୁରବେ ନମଃ

ବାରିଧି-ବାରିରେ ବାରିଧିତର୍ପଣ
କରଇ ଯେହ୍ନେ ଭକତ,
ତବ ଦତ୍ତଜ୍ଞାନେ ଜ୍ଞାନ ଲଭି ଗୁରୋ !
ଅରପିଲି ହୋଇ ନତ ।

*

*

*

ଦେବତାର ଛଡ଼ାଫୁଲକୁ ରସିକକାନ୍ତ ତାହାର ପ୍ରିୟାର କବରୀରେ ଖୋସିଲା ପରି, ମୋର ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ କୃପାସିନ୍ଧୁ କରଙ୍କୁ ଅର୍ପିତ ଏବଂ "ସଟୀକ ଯମକରାଜ ଚଉତିଶା"କୁ ମୋର ସହଧର୍ମିଣୀ ଶ୍ରୀମତୀ 'କମଳା'ର କରକମଳରେ ଅର୍ପଣ କଲି ।

ଚଉଦ୍ୱାର
୧୫ । ୮ । ୭୨

ଗୁଣମୁଗ୍ଧ
**ଦରଦୀକବି**

# ପ୍ରଥମ ସଂସ୍କରଣର ଭୂମିକା

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ-ବିରଚିତ ସମକବିଜ ଚଉତିଶା ତାଙ୍କର ପାଣ୍ଡିତ୍ୟ ଓ ଶବ୍ଦଜ୍ଞାନର ଚରମ ନିଦର୍ଶନ । ଅମର, ଯାଦବ, ତ୍ରିକାଣ୍ଡ, ଶାଶ୍ୱତ ଓ ବିଶ୍ୱକୋଷ ପ୍ରଭୃତି କୋଷଗ୍ରନ୍ଥରେ କବିସମ୍ରାଟଙ୍କର ବିଶେଷ ଦଖଲ ଥିଲା । ଦୁଃଖର ବିଷୟ ଉତ୍କଳ ସାହିତ୍ୟର ଏକ ଅମୂଲ୍ୟ ଓ ଅତୁଳନୀୟ ସମ୍ପଦ ଏହି ସମକବିଜ ଚଉତିଶା ଟୀକା ଅଭାବରୁ ଗର୍ଭଗର୍ଭସ୍ଥିତ ମଣି ତୁଲ୍ୟ ଜନସମାଜରେ ତାହାର ଜ୍ୟୋତି ବିକୀରଣ କରି ପାରୁ ନ ଥିଲା । ଭଞ୍ଜବୀରଙ୍କର ଶାବ୍ଦିକତା ତୁଳନାରେ ମୋର ଜ୍ଞାନ ନିତାନ୍ତ ତୁଚ୍ଛ । ତଥାପି ଭଞ୍ଜ-କାବ୍ୟ-କବିତା-ପ୍ରେମୀ ସୁଧୀମାନଙ୍କର ଚିତ୍ତବିନୋଦନାର୍ଥେ ମୁଁ ଭାଷାକୋଷ, ମେଦିନୀ, ଏକାର୍ଥକୋଷ ଓ ଅମରକୋଷ ପ୍ରଭୃତିରୁ ଶବ୍ଦମାନଙ୍କର ଅର୍ଥ ଅନ୍ୱେଷଣ କରି ଏହାର ଟୀକା ସଂକଳନରେ ଚେଷ୍ଟିତ ହେଲି । ମୋପରି ସାମାନ୍ୟ ବ୍ୟକ୍ତି ପକ୍ଷରେ ଏହା ଏକ ଦୁଃସାହସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଳିଙ୍ଗଭାରତୀର ପ୍ରତିଷ୍ଠାତା ତଥା ସ୍ୱନାମଧନ୍ୟ କବି ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକ ବି.ଏ., (ଅନର୍ସ) ବି. ଏଲ୍ ମୋର ଏ ସାଧୁ ଉଦ୍ୟମକୁ ପ୍ରଶଂସା କରି ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ପ୍ରତି ଚିରକୃତଜ୍ଞ ।

ଏହାର ଟୀକା ସଂକଳନରେ ମହାକବି କାଳିଦାସଙ୍କ ବିରଚିତ "ରଘୁବଂଶ" ର ପ୍ରଥମ ସର୍ଗସ୍ଥିତ ୨ୟ ଶ୍ଳୋକ ମନେ ପଡ଼େ:—

"କ୍ୱ ସୂର୍ଯ୍ୟପ୍ରଭବୋବଂଶଃ କ୍ୱଚାଲ୍ପବିଷୟା ମତିଃ
ତିତୀର୍ଷୁର୍ଦୁସ୍ତରଂ ମୋହାଦୁଡ଼ୁପେନାସ୍ମି ସାଗରମ୍ ॥"

ବିନୟାବନତ
**ଟୀକାକାର**

# ଅଗ୍ରଲେଖ

କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କର ଯମକରାଜ ଚଉତିଶା ବିଶ୍ୱସାହିତ୍ୟର ଏକ ଅନୁପମ ସୃଷ୍ଟି । ଏତାଦୃଶ ଯମକକାବ୍ୟ ଗ୍ରୀକ୍, ଲାଟିନ୍, ସଂସ୍କୃତ, ଇଂରାଜୀ ଜର୍ମାନ ତଥା ଅନ୍ୟାନ୍ୟ ସାହିତ୍ୟରେ କୁତ୍ରାପି ପରିଲକ୍ଷିତ ହୁଏ ନାହିଁ । ଗ୍ରୀକ୍‌ର ପ୍ରସିଦ୍ଧ କବି ହୋମର, ଲାଟିନର ଶ୍ରେଷ୍ଠ କବି ଭରଜିଲ୍ ଆସ୍ପେନାଡ୍, ଜର୍ମାନର ବିଖ୍ୟାତ କବି ଗେଟେ ଓ ଇଂରାଜୀର ବିଶ୍ୱବିଶ୍ରୁତ କବି ସେକ୍ସପିଅରଙ୍କ କାବ୍ୟକବିତାମାନଙ୍କରେ ଭାବପ୍ରାଧାନ୍ୟ ଓ ଭାଷାସୌଷ୍ଠବ ପ୍ରଚୁର ମାତ୍ରାରେ ବିଦ୍ୟମାନ ହେଲେହେଁ ଏଭଳି ଯମକର ପ୍ରୟୋଗ ଦୃଷ୍ଟିଗୋଚର ହୁଏନାହିଁ । ସଂସ୍କୃତ କବିମାନଙ୍କ ମଧ୍ୟରେ ମାଘ, ଶ୍ରୀହର୍ଷ ଓ ଘଟକର୍ପର ପ୍ରଭୃତିଙ୍କ କାବ୍ୟରେ ଯମକର ପ୍ରୟୋଗ ଥିଲେହେଁ ତାହା ସ୍ୱଳ୍ପ । କବିକୁଳତିଳକ କାଳିଦାସ ତାଙ୍କର "ନଳୋଦୟ" କାବ୍ୟକୁ ଯମକସୂତ୍ରରେ ରଚନା କରିଛନ୍ତି ସତ, କିନ୍ତୁ ସେଥିରେ ପ୍ରତ୍ୟେକ ଯମକ ଶବ୍ଦ ମାତ୍ର ଦୁଇ ତିନିଥର ବ୍ୟବହୃତ; କିନ୍ତୁ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କର ଯମକରାଜ ଚଉତିଶାରେ ଗୋଟିଏ ଶବ୍ଦ ସାତ ଆଠ ଥର ପ୍ରୟୋଗ କରାଯାଇଛି । ତେଣୁ ଯଥାର୍ଥରେ ଏହା "ଯମକ-ରାଜ ଚଉତିଶା" ଓ ତାର ସ୍ରଷ୍ଟା ଉପେନ୍ଦ୍ରଭଞ୍ଜ ଚତୁରତା କବିସମ୍ରାଟ୍ ।

ଭଞ୍ଜସାହିତ୍ୟ ଅଧ୍ୟୟନସମୟରେ ଉକ୍ତ ଚଉତିଶାରେ ଥିବା ଯମକ ଶବ୍ଦମାନଙ୍କର ଅର୍ଥ ବୁଝି ତାହାର ରସାସ୍ୱାଦନ ନିମିତ୍ତ ମୁଁ ବହୁ ବିଶିଷ୍ଟ ସାହିତ୍ୟିକ, ସମାଲୋଚକ, ଅଧ୍ୟାପକ ତଥା ପାଠକମାନଙ୍କଠାରୁ ବିଫଳ-ମନୋରଥ ହୋଇ ନିଜେ ଏହାର ଟୀକା ସଂକଳନରେ ବ୍ରତୀ ହେଲି । ତେଣୁ ଭାଷାକୋଷ, ଏକାର୍ଥକୋଷ, ଅମରକୋଷ ଓ ଧ୍ୱନିମଞ୍ଜରୀ ପ୍ରଭୃତିରୁ ଶବ୍ଦା-ବଳୀର ଅର୍ଥ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଭଞ୍ଜଙ୍କର ଅନ୍ୟାନ୍ୟ କାବ୍ୟମାନ ଅଧ୍ୟୟନ କରି ଏବଂ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ସଂସ୍କୃତ ଅଧ୍ୟାପକ ତଥା ମାରୱାଡ଼ୀ ସେବାସଙ୍ଘ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ପଣ୍ଡିତ ଶ୍ରୀ ଜିନାଥ ଦାସ, ଏମ. ଏ., ସାହିତ୍ୟ-ବ୍ୟାକରଣ-ନ୍ୟାୟାଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ କିଛି ଦିନ କାଶୀରେ ରହି ବିଭିନ୍ନ ସଂସ୍କୃତ କାବ୍ୟ ଓ ଅଳଙ୍କାର ଗ୍ରନ୍ଥପାଠର ସୁଯୋଗ ଲାଭକରି ଏହି ଟୀକା ସଂକଳନରେ ପ୍ରୟାସ କଲି । ଉକ୍ତ ପୁସ୍ତକର ପାଣ୍ଡୁଲିପି ପାଠକରି ଭଞ୍ଜଭକ୍ତ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ଏକାନ୍ତ

ବିସ୍ତୃତ ଓ ପ୍ରୀତ ହୋଇ ଏଥିରେ ଅର୍ଥ ସହିତ ଅନ୍ୱୟ ଯୋଗ କରିବା ଲାଗି ମୋତେ ଉପଦେଶ ଦେଇଥିବାରୁ ମୁଁ ତାଙ୍କ ପ୍ରତି କୃତଜ୍ଞ ।

ଉକ୍ତ ପୁସ୍ତକ ପାଠ କରି ରେଭେନ୍‌ସା ବାଳିକା ବିଦ୍ୟାଳୟର ସଂସ୍କୃତ-ଶିକ୍ଷକ ପଣ୍ଡିତ ଶ୍ରୀ ଆନନ୍ଦଚନ୍ଦ୍ର ମିଶ୍ର ଶୁଭାଶିଷ ବର୍ଷଣ କରି ତଥା କାଶୀସ୍ଥ ସାହିତ୍ୟ ଏକାଡେ଼ମୀର ସହକାରୀ ସଚିବ ଡକ୍‌ଟର ପ୍ରଭାକର ମାଚ୍ୱେ, ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର, ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା, ପୁରୀ ସଂସ୍କୃତ କଲେଜର ଭୂତପୂର୍ବ ଅଧ୍ୟକ୍ଷ ଶ୍ରୀ ରାମଚନ୍ଦ୍ର ମହାପାତ୍ର, ମହିଳାକଲେଜର ଅଧ୍ୟକ୍ଷା ଡକ୍‌ଟର ଶ୍ରୀମତୀ ଶୋଭା ରାୟ, ଅଧ୍ୟାପକ ଶ୍ରୀ ଶ୍ରୀଧର ଦାସ, ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ, କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ, ସାହିତ୍ୟ-ରସିକ ଶ୍ରୀ ବ୍ରଜବିହାରୀ ମିଶ୍ର, ଅଧ୍ୟାପକ ଶ୍ରୀ ରଙ୍ଗାଧର ଷଡ଼ଙ୍ଗୀ, ଗାୟକ-ସମ୍ରାଟ୍ ଶ୍ରୀ ବିଶ୍ୱନାଥ ପଣ୍ଡାଯୋଷୀ ଓ ଗାୟକଶିରୋମଣି ଶ୍ରୀ ନିରଞ୍ଜନ କର ଅଭିମତ ପ୍ରଦାନ କରି ମୋତେ କୃତଜ୍ଞତାପାଶରେ ଆବଦ୍ଧ କରିଛନ୍ତି ।

ରେଭେନ୍‌ସା ବାଳିକା ବିଦ୍ୟାଳୟର ହେଡ଼୍‌ପଣ୍ଡିତ ଶ୍ରୀ ମାୟାଧର ନନ୍ଦ, ସାହିତ୍ୟାର୍ଣ୍ଣ ଉକ୍ତ ପୁସ୍ତକ ପ୍ରକାଶନରେ ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରୁଅଛି ।

ଓଡ଼ିଶା ଶିଳ୍ପବିକାଶ ସଂସ୍ଥା (Industrial Development Corporation) ର ସେକ୍ରେଟାରୀ ଶ୍ରୀ ଅକ୍ଷୟକୁମାର ଶତପଥୀ B. A, (Hons) O. A. S. ଉକ୍ତ ପୁସ୍ତକର ମୁଦ୍ରଣ ଲାଗି ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଏହି ଟୀକାସଙ୍କଳନକୁ ସୁଖପାଠ୍ୟ କରିବା ପାଇଁ ଏଥିରେ ୫୬ ଗୋଟି ସଂସ୍କୃତ କାବ୍ୟକବିତାରୁ ୧୬୬ ଟି, ୧୦୧ ଗୋଟି ଓଡ଼ିଆ କାବ୍ୟକବିତାରୁ ୨୪୨ ଟି, ୮ଟି ହିନ୍ଦୀ କାବ୍ୟକବିତାରୁ ୧୩ ଟି, ୩ଟି ବଙ୍ଗଳା କବିତାରୁ ୭ଟି, ୨ଟି ଉର୍ଦ୍ଦୁ କବିତାରୁ ୨ଟି ଓ ୧୦ ଟି ଇଂରାଜୀ କବିତାରୁ ୧୦ ଟି— ଏହିପରି ୧୮୦ ଟି କାବ୍ୟକବିତାରୁ ୪୪୦ ଟି ସମାନ୍ତରାଳ ଉଦାହରଣ ସନ୍ନିବେଶିତ କରାଯାଇଛି । ଆଶା ଓ ବିଶ୍ୱାସ, ସହୃଦୟ ଭକ୍ତିକାବ୍ୟପ୍ରେମୀ ସୁଧୀମାନଙ୍କ ଦ୍ୱାରା ଏହା ଆଦୃତ ହେବ । ଇତି ।

ବିନୟାବନତ
**ଟୀକାକାର**

## ପଣ୍ଡିତ ଶ୍ରୀ ଆନନ୍ଦଚନ୍ଦ୍ର ମିଶ୍ର, କାବ୍ୟତୀର୍ଥ, ନ୍ୟାୟ-ସାଂଖ୍ୟ-ଶାସ୍ତ୍ରୀ

### ଶୁଭାଶୀଃ

ବାଣୀ-ବେଣୀ ବରେଣ୍ୟ-ପୂର୍ଣ୍ଣାମୋଦ-ମନ୍ଦାରମାଳା—
ମନ୍ଦସ୍ୟନ୍ଦନ୍ମଧୁରସ-ଲସଚ୍ଛଟସ୍ତବକୋ ମୁରାରିଃ ।
ସୋଽୟଂ ଦେବୋ-ଽମରଗିରିସୁତାନନ୍ଦଦଶ୍ଚନ୍ଦ୍ରମୌଳି
ର୍ଦିଷ୍ଟଂ ଜ୍ଞାନଂ ବିତରତୁ ତରାଂ ବିଶ୍ୱନାଥାୟ ସମ୍ୟକ୍ । ୧ ।

ନିଷ୍ଠା-ସତ୍ୟ-ବିବେକ-ଧୈର୍ଯ୍ୟ-କରୁଣା-ମୈତ୍ରୀ-ଗୁଣାଲଙ୍କୃତୋ
ଲଙ୍କା-ଭାରତ-ସର୍ବଧାମସୁଭଗଃ କାଶ୍ମୀର-ନେପାଳଦୃକ୍ ।
କର୍ମୀ, କାବ୍ୟକଳାକଳାପ-କୁତୁକୀ, ଶ୍ରୀ ବିଶ୍ୱନାଥ କବି-
ର୍ଦୀର୍ଘଂ ଜୀବତୁ ନିର୍ଭୟୋ, ଗୁଣିଗୁଣଗ୍ରାହୀ, ସଦାଳାପକୃତ୍ । ୨ ।

ପଲ୍ଲୀପ୍ରୀତିଃ ସଷ୍ଟଶକ୍ତିସ୍ତଥା ବିରଦ୍ଧବାନ୍ଧବା,
ମାତୃନିର୍ଝରଣୀ, ରତ୍ନରେଣୁ-ମିଲନମାଧୁରୀ ।
ଋତୁସଂହାର କାବ୍ୟଞ୍ଚ ଟୀକା ଯମକରଞ୍ଜିକା,
ବିସ୍ତୃତା ଯମକବ୍ୟାଖ୍ୟା, କୃତୟସ୍ତସ୍ୟ ଧୀମତଃ । ୩ ।

ବିରୂପା ତଟିନୀ-ତୀରେ ରାଜତେ କମଳାଳୟା ।
ଚତୁର୍ଦ୍ୱାରାଖ୍ୟ-ବସତିଃ, ସଭୂତ୍ତର୍ଦ୍ୱିଜବଂଶକେ ।।
ନାରାୟଣସ୍ୟତନୟୋ ହାରାମଣି-ସୁତୋଽପ୍ୟୟଂ ।
ପିତାମହ-କୃପାସିନ୍ଧୁ- ଶିଷ୍ୟତ୍ୱେନ ବିଚକ୍ଷଣଃ । ୪ ।

**ଶ୍ରୀ ଆନନ୍ଦ ଚନ୍ଦ୍ର ମିଶ୍ର**
କାବ୍ୟତୀର୍ଥ-ନ୍ୟାୟ-ସାଂଖ୍ୟ-ଶାସ୍ତ୍ରିଣଃ

—o—

# SAHITYA AKADEMI

President :
Jawaharlal Nehru
Vice-president :
S. Radhakrishnan
Secretary :
K. Kripalani.

(Natonal academy of
Letters)
73, Theatre Communication
Building.
Connaught Circus,
New Delhi.

Ref: S. A. 16/2/6350, August 24, 1957,

Shri Biswanath Kar,
Jayaguru Pratisthan,
Chowdwar, Cuttack.

Dear Sir,

I definitely remember that you had given me your books. But I don't feel myself competent to send you any opinion on your poetry. I enjoyed reading some of them.

Yours faithfully,
Sd/-P. Machwe.
Asst. Secretary.

## ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର ଏମ୍. ଏ., ଡ଼ି. ଇଡ଼.
## ରେଭେନ୍ସା କଲେଜ, କଟକ

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ "ଯମକରାଜ ଚଉତିଶା" ଉପରେ ତରୁଣକବି ଶ୍ରୀମାନ୍ ବିଶ୍ବନାଥକରଙ୍କର ଟୀକା ଗୁଡ଼ିକ ପାଠକରି ଅତୀବ ପ୍ରୀତ ହେଲି । କବିବନ୍ଧୁଙ୍କର ଏ ପ୍ରକାର ଉଦ୍ୟମ ଉତ୍କଳ ସାହିତ୍ୟ ଭଣ୍ଡାରର ଅତୀତ ରଚନାବଳୀର ଯଥାର୍ଥ ଅବଧାରଣା କରିବା ଦିଗରେ, ନିଶ୍ଚୟ ଆଲୋକପାତ କରି ପାରିଛି, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଭଞ୍ଜୀୟ କାବ୍ୟ କବିତା ଗୁଡ଼ିକ ଗଭୀର ମନସ୍ତତ୍ତ୍ୱ ଓ ବ୍ୟଞ୍ଜନାବହୁଳ ଭାବଧାରାର ସମନ୍ୱୟରେ ପରିପୂର୍ଣ୍ଣ ଏବଂ ଗୋଟିଏ ଗୋଟିଏ ରଚନା ଉପରେ ଧାରାବାହିକ ଟୀକା ଯଥୋଚିତ ଅର୍ଥଗାମ୍ଭୀର୍ଯ୍ୟର ବିଶ୍ଳେଷଣପୂର୍ବକ ଏ ପର୍ଯ୍ୟନ୍ତ ହୋଇନାହିଁ, କହିଲେ ଚଳେ । ଯେ କେତୋଟି ଗ୍ରନ୍ଥ ଉପରେ ଯାହା କିଛି ଉଦ୍ୟମ ଏ ପର୍ଯ୍ୟନ୍ତ ହୋଇଛି ତାହା ମଧ୍ୟ ପୂର୍ଣ୍ଣଭାବରେ ବିଶ୍ଳେଷଣଦୃଷ୍ଟିରୁ ଅଭାବ ପୂରଣ କରି ପାରିନାହିଁ । ସୁଖର କଥା ମୋର ବନ୍ଧୁ ଯମକରାଜ-ଚଉତିଶା ପରି କଠିନାତିକଠିନ ରଚନା ଉପରେ ଟୀକା କରିବାକୁ ଅନୁପ୍ରାଣିତ ହୋଇ ବହୁପରିମାଣରେ କୃତକାର୍ଯ୍ୟ ହୋଇଅଛନ୍ତି । ଏହି ଉଦ୍ୟମକୁ ସାଫଲ୍ୟମଣ୍ଡିତ କରିବା ଲାଗି ସେ ପ୍ରଗାଢ଼ ଅଧ୍ୟବସାୟପୂର୍ବକ ବହୁ ଶାସ୍ତ୍ର ଅଧ୍ୟୟନ କରିବାରେ ଅଧିକ ଆନନ୍ଦ ଲାଭ କରିଅଛନ୍ତି, ଏବଂ ପଦଗୁଡ଼ିକର ବିଶ୍ଳେଷଣ ତଥା ଭାବାର୍ଥ ଗାମ୍ଭୀର୍ଯ୍ୟମୟ ସାମଗ୍ରୀ ଗୁଡ଼ିକରୁ ଅଧିକ ହୃଦୟଙ୍ଗମ କରାଇଦେବାଲାଗି ଭିନ୍ନ ଗ୍ରନ୍ଥରୁ ବିଭିନ୍ନ ଦୃଷ୍ଟାନ୍ତ ଓ ସମାନ୍ତରାଳ ଉଦାହରଣ ଦେଇଅଛନ୍ତି । ନୈସର୍ଗିକ କବି, ଦାର୍ଶନିକ, ଆଳଙ୍କାରିକ ଓ ଆଦର୍ଶବାଦୀ ଭଞ୍ଜଙ୍କର ରଚନାବଳୀର ବହୁତୋମୁଖୀ ଯୋଜନା ଲାବଣ୍ୟ ଉପଭୋଗ କରିବାକୁ ହେଲେ ସେଗୁଡ଼ିକର ଧାରାବାହିକ ଟୀକା ଓ ବିଶ୍ଳେଷଣ ଏକାନ୍ତ ଆବଶ୍ୟକ । କବିବନ୍ଧୁ ଏ ଦିଗରେ ସ୍ୱତଃପ୍ରବୃତ୍ତ ହୋଇ ପଦ ଗୁଡ଼ିକରେ ସନ୍ନିବିଷ୍ଟ ଚିନ୍ତାଧାରା, ଯୋଜନା ଓ ଶବ୍ଦଚାତୁର୍ଯ୍ୟକୁ ସୁସ୍ପଷ୍ଟ କରିଦେବାରେ ସ୍ୱକୀୟ ସାଧନାର କୃତିତ୍ୱ ଅର୍ଜନ କରି ପାରିଅଛନ୍ତି ।

ବନ୍ଧୁଙ୍କର ବହୁ ଶାସ୍ତ୍ରାଧ୍ୟୟନ ବଳରେ ହିଁ ଏହି ଗୁରୁଦାୟିତ୍ୱ ବହନ କରିବା ତାଙ୍କ ପକ୍ଷରେ ସର୍ବଦା ସମ୍ଭବ ହୋଇଛି । ନୈଷଧଚରିତ, ଶିଶୁପାଳ-ବଧ, ମେଘଦୂତ, ଶୃଙ୍ଗାରତିଳକ, ରସାର୍ଣ୍ଣବ ସୁଧାକର, ପଞ୍ଚସାୟକ, ଗୀତଗୋବିନ୍ଦ, ରଘୁବଂଶ, ସାହିତ୍ୟଦର୍ପଣ ଓ ଭରତ ପ୍ରଭୃତି କଠିନ କାବ୍ୟ ଓ ଅଳଙ୍କାରଶାସ୍ତ୍ରଗୁଡ଼ିକରୁ ତଥା ଭକ୍ତୀୟ ଓ ବିଭିନ୍ନ ଗ୍ରନ୍ଥ ଗୁଡ଼ିକରୁ ସମାନ୍ତ-ସ୍ଥଳ ଚିତ୍ରଣ ବା ଦୃଷ୍ଟାନ୍ତଗୁଡ଼ିକୁ ଆହରଣ କରି ଯମକରାଜ ଚଉତିଶାର ବିଶ୍ଳେଷଣ ଲାଗି ସେ ସମୁତ୍ସାହିତ ହୋଇଛନ୍ତି । ଟୀକା ଯଥାର୍ଥତଃ ସରସ, ସମୀଚୀନ ଓ ସଫଳ ହୋଇଛି । ବୃହଦାକାର ଟୀକା କରି ଯାଇଥିଲେ ଗ୍ରନ୍ଥ କଳେବର ପରିବର୍ଦ୍ଧିତ ହେବା ସ୍ୱାଭାବିକ, ମାତ୍ର ବନ୍ଧୁଙ୍କର ଏହି ଉଦ୍ୟମ ଟୀକାର କଳେବର ଦୃଷ୍ଟିରୁ ସ୍ୱଳ୍ପ ପରିସରରେ ଆବଦ୍ଧ ହୋଇଥିଲେ ହେଁ ପାଠକ ଓ ଗ୍ରାହକମାନଙ୍କ ଲାଗି ଏକ ନୂତନ ଉଜ୍ଜ୍ୱଳ ପନ୍ଥା ଉନ୍ମୁକ୍ତ କରି-ଦେଇଛି କହିବା ବାହୁଲ୍ୟ ମାତ୍ର ।

ବନ୍ଧୁ କାବ୍ୟକବିତା ରଚନାରେ ସ୍ୱକୀୟ ସମସ୍ତ ଶକ୍ତି ନିୟୋଜିତ କରିବା ସଙ୍ଗେ ସଙ୍ଗେ ଟୀକାକାର ଭାବରେ ତାଙ୍କର ଯାହା କର୍ତ୍ତବ୍ୟ, ସେଥିରୁ ଅବ୍ୟାହତି ଲାଭ ନ କରିବା ପାଇଁ ମୁଁ ତାଙ୍କୁ ଅନୁରୋଧ କରୁଛି । ତାଙ୍କର ସାଧନା ସାର୍ଥକ ହେଉ ଏବଂ ସାହିତ୍ୟ କ୍ଷେତ୍ରରେ ତାଙ୍କର ମହୋଦ୍ୟମ ସର୍ବଥା କୃତକାର୍ଯ୍ୟ ହେଉ, ଏହାହିଁ ଏକାନ୍ତ କାମନା ।

ଅଳମତି ବିସ୍ତରେଣ,—

ଶ୍ରୀ ଜୟକୃଷ୍ଣ ମିଶ୍ର

୧୯-୧୨-୫୭

## ଅଧ୍ୟାପକ **ଶ୍ରୀ ଗୌରୀ କୁମାର ବ୍ରହ୍ମା**, ଏମ୍. ଏ., ଡ଼ି. ଇଡ୍,
## ସେକ୍ରେଟାରୀ, ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଶ୍ରୀମାନ୍ ବିଶ୍ୱନାଥଙ୍କର 'ଯମକରାଜ ଚଉତିଶା' ଟୀକା ବଳେ ବଳେ ମନେ ଆକର୍ଷଣ କରି ନେଇଛି । ଅନେକ ଦିନ ତଳେ ମୁଁ ତହିଁର କିୟଦଂଶ ମୁଖସ୍ଥ କରିଥିଲି, କିନ୍ତୁ ପ୍ରତିପଦର ଅର୍ଥ ବୁଝିପାରି ନଥିଲି କିମ୍ବା ସେବିଷୟରେ ମୁଣ୍ଡ ଖେଳାଇନଥିଲି । ବହୁଦିନ ପରେ, ଆଜି ହଠାତ୍ ଏଇ ଟୀକା ଖଣ୍ଡିକ ପାଇ ଅତିଶୟ ସୁଖୀହେଲି । ପ୍ରାଚୀନସାହିତ୍ୟପ୍ରତି ପାଠକସାଧାରଣଙ୍କର ଆଦର ଓ ଆଗ୍ରହ ଜନ୍ମାଇବାର ପ୍ରଧାନ ଉପାୟ ହେଉଛି ସୁଖବୋଧ ଟୀକା ଓ ତୁଳନାତ୍ମକ ଆଲୋଚନା । ଶ୍ରୀମାନ୍ ବିଶ୍ୱନାଥଙ୍କର ଏହି ଉଦ୍ୟମ ସର୍ବଥା ଅଭିନନ୍ଦନୀୟ । ତାଙ୍କର ବୃତ୍ତିକର୍ମ ଏ ପ୍ରକାର ସାଧନାର ଆଦୌ ଅନୁକୂଳ ନୁହେ, ତଥାପି ସେ ଏଥିରେ ଆତ୍ମନିୟୋଗ କରି ଯେଉଁ କୃତକାର୍ଯ୍ୟତା ଦେଖାଇ ଅଛନ୍ତି, ତାହା ଦେଖି ମୁଁ ବିସ୍ମିତ । ତାଙ୍କର ପ୍ରାଚୀନ ସାହିତ୍ୟ ପ୍ରୀତିରେ ମୁଁ ମୁଗ୍ଧ । ତେବେ ତାଙ୍କୁ ମୋର ପଦେ ଉପଦେଶ—'ଏହିଭଳି ନିଷ୍ଠା ସେ ବରାବର ରଖି ଅଗ୍ରଣୀ ହୁଅନ୍ତୁ ।' ସେ ନିଜେ କବି, ଅନୁବାଦକ ଓ କଳ୍ପନା-ବିଳାସୀ । ଏଥିରେ ଟୀକାକାରର ଗଭୀର ଅନ୍ତର୍ଦୃଷ୍ଟି ଯଦି ଯଥା-ରୀତିରେ ଫୁଟି ଉଠିବ, ସାଧନାର ସିଦ୍ଧି ବହୁଦୂରରେ ରହିବ ନାହିଁ । ମୋର ଆଶା, ତାଙ୍କର ଲେଖନୀ ଆହୁରି ମହତ୍ତର ଦାନରେ ସାହିତ୍ୟର ପୁଷ୍ଟି ସାଧନ କରିବ ।

**ଗୌରୀକୁମାର ବ୍ରହ୍ମା**
୧ । ୧ । ୧୯୬୮

—୦—

ଡକ୍ଟର **ଶ୍ରୀମତୀ ଶୋଭା ରାୟ,** ଏମ୍. ଏ., ପି. ଏଚ୍. ଡ଼ି.

ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କର କୃତିମାନ ଆଜି ବିଦଗ୍ଧ ସମାଜରେ ସୁପରିଚିତ। ତାଙ୍କର ରଚନାମାନଙ୍କ ମଧ୍ୟରେ "ସଟୀକ ଯମକରାଜ ଚଉତିଶା" ଖଣ୍ଡିକ ପଢ଼ି ବିଶେଷ ପ୍ରୀତହେଲି। ଶ୍ରୁରୁକଲା ବିଶେଷତଃ ସାହିତ୍ୟର ସୂକ୍ଷ୍ମବିଶ୍ଳେଷଣରେ ଯେଉଁମାନେ ଆଗ୍ରହୀ, ସେମାନଙ୍କୁ ମୋର ଅନୁରୋଧ, ସେମାନେ ଏହାର ଆଲୋଚନା କରି ଜ୍ଞାନ ବୈଶଦ୍ୟ ଲାଭ କରନ୍ତୁ।

ଶ୍ରୀଯୁକ୍ତ କର ବୟସରେ ନବୀନ ହେଲେହେଁ ଶାସ୍ତ୍ରଜ୍ଞାନ ଏବଂ ବିଚାରଶକ୍ତିରେ ନିଜକୁ ଜ୍ଞାନବୃଦ୍ଧରୂପେ ପ୍ରତିପାଦିତ କରିଥିବା ସୁଖର କଥା।

**ଶୋଭା ରାୟ**

ତା ୫।୩।୫୭

—୦—

## ଅଧ୍ୟାପକ **ଶ୍ରୀ ଶ୍ରୀଧର ଦାସ,** ଏମ୍. ଏ., ଡ଼. ଇଡ଼.

## ର୍‍ାଭେନ୍‌ସା କଲେଜ, କଟକ

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟକବିତାଗୁଡ଼ିକ ଶବ୍ଦ-କାଠିନ୍ୟ ଓ ଅଳଙ୍କାରବାହୁଲ୍ୟ ହେତୁ ସାଧାରଣପାଠକମାନଙ୍କ ପକ୍ଷରେ ଦୁର୍ବୋଧ ବୋଧହୁଏ । ତାଙ୍କର ରଚନାରେ ପ୍ରାଚୀନ ସଂସ୍କୃତସାହିତ୍ୟର ସ୍ପଷ୍ଟ ଅନୁସୃତ ଏବଂ ତାହାର ଅର୍ଥାବଗତ ତଥା ରସବୋଧ ନିମିତ୍ତ ସଂସ୍କୃତଜ୍ଞାନ ବିଶେଷ ଆବଶ୍ୟକ । ଭଞ୍ଜ କବିଙ୍କର ବୈଦେହୀଶ ବିଳାସ, ଲାବଣ୍ୟବତୀ, ରସିକହାରାବଳୀ ପ୍ରଭୃତି କାବ୍ୟର କେବଳ ସଟୀକ ସଂସ୍କରଣ ବାହାରିଅଛି । ମାତ୍ର ଯମକରାଜ ଚଉତିଶାର କୌଣସି ଟୀକା ଏଥିପୂର୍ବରୁ ପ୍ରକାଶିତ ହୋଇନଥିଲା । ଏହି ଚଉତିଶାଟିର ଆକାର କ୍ଷୁଦ୍ର ହେଲେ ସୁଦ୍ଧା ଶବ୍ଦ ଗୌରବରେ ଏହାର ସ୍ଥାନ ଅତି ଉଚ୍ଚ । ସୁଖର କଥା, ପଣ୍ଡିତ ଶ୍ରୀ ବିଶ୍ୱନାଥ କର (କୋବିଦ) ଏହି ଚଉତିଶାର ଗୋଟିଏ ସଟୀକ ସଂସ୍କରଣ ପ୍ରକାଶ କରି ରସିକ ପାଠକମାନଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । ଏହାର ଟୀକା ପ୍ରଣୟନରେ ସେ ସଂସ୍କୃତ କୋଷଗ୍ରନ୍ଥ, ଭରତ, ମେଦିନୀ, ଅମର, ଏକାର୍ଥକୋଷ ପ୍ରଭୃତି ଏବଂ ଓଡ଼ିଆ ଗୀତାଭିଧାନ ଓ ଭାଷା-କୋଷ ପ୍ରଭୃତି ଅଲୋଡ଼ନ କରିଅଛନ୍ତି । ତତ୍‌ସଙ୍ଗେ ସଂସ୍କୃତଗ୍ରନ୍ଥ, ପଞ୍ଚଶାୟକ, ନୈଷଧଚରିତ, ଶିଶୁପାଳବଧ, ଶୃଙ୍ଗାରତିଳକ, ମେଘଦୂତ, ରଘୁବଂଶ, ଗୀତଗୋବିନ୍ଦ, ଋତୁସଂହାର ଆଦିରୁ ସମାନ୍ତରାଳ ଉଦାହରଣ ଦେବାଦ୍ୱାରା ଟୀକାର ମହତ୍ତ୍ୱ ଯଥେଷ୍ଟ ବୃଦ୍ଧି ପାଇଛି । ଭଞ୍ଜଙ୍କର ଅନ୍ୟାନ୍ୟ ଓଡ଼ିଆ କାବ୍ୟ ସହିତ ଏହି ଚଉତିଶାର ତୁଳନାତ୍ମକ ବିଚାର କରାଯାଇଥିବାରୁ କବିଙ୍କ କୃତିର ଯଥାର୍ଥ ମୂଲ୍ୟବୋଧ କରିବାକୁ ପାଠକ ସମର୍ଥ ହୁଏ ।

ଆମର ପ୍ରାଚୀନ ସାହିତ୍ୟରେ ଏହି ଚଉତିଶାପରି ଅନେକ ରତ୍ନ ରହିଅଛି । ମାତ୍ର ଉପଯୁକ୍ତ ଟୀକାକାର ସେଗୁଡ଼ିକୁ ପାଠକମାନଙ୍କ ଆଗରେ ଚହ୍ଲାଇ ପାରିନାହାନ୍ତି । ଶ୍ରଦ୍ଧେୟ ଶ୍ରୀ ବିଶ୍ୱନାଥ କର ଅଦମ୍ୟ ଅଧ୍ୟବସାୟ ଫଳରେ ସମକଲ୍ପଜ ଚଉତିଶାର ଟୀକା ଲେଖି ଗୋଟିଏ ବହୁ ଦିନର ଅଭାବ ପୂରଣ କରିଅଛନ୍ତି । ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, କଳାକଉତୁକ, ରସପଞ୍ଚକ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଭୃତିର ଟୀକାର ଏକାନ୍ତ ଅଭାବ ରହିଛି । ଅନୁରୋଧ, ଯୁବକ କବି ତଥା ଟୀକାକାର ବିଶ୍ୱନାଥ ଏସବୁର ସଟୀକ ସଂସ୍କରଣ ପ୍ରକାଶ କରି ଓଡ଼ିଆ ପାଠକ-ମାନଙ୍କର ପିପଠିଷା ପୂରଣ କରନ୍ତୁ ଏବଂ ଓଡ଼ିଆ ସାହିତ୍ୟରେ ସ୍ଥାୟୀ ଆସନ ଅଧିକାର କରନ୍ତୁ ।

**ଶ୍ରୀଧର ଦାସ**

୨୨ । ୧ । ୫୮

—o—

## ଶ୍ରୀ ପଠାଣି ପଟ୍ଟନାୟକ ଏମ୍. ଏ.

ଅଧ୍ୟାପକ ଖ୍ରୀଷ୍ଟ କଲେଜ, କଟକ

କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଏକାଧାରରେ ପଣ୍ଡିତ ଓ କବି ଥିଲେ । ଉତ୍କଳର ଲକ୍ଷ ଲକ୍ଷ ଅନୁରାଗୀ ପାଠକ ତାଙ୍କ ରଚିତ "ଯମକରାଜ ଚଉତିଶା" ର ଶବ୍ଦକାନନ ମଧ୍ୟରେ ପ୍ରବେଶ କରି ପ୍ରକୃତ କାବ୍ୟର ସୌନ୍ଦର୍ଯ୍ୟ ଉପଭୋଗ କରିବାପାଇଁ ଅସମର୍ଥ ହେଉଥିଲେ । ଶ୍ରୀମାନ୍ ବିଶ୍ୱନାଥ କର ଏହି ଚଉତିଶାର ବିଶ୍ଳେଷଣାତ୍ମକ ଟୀକା ପ୍ରକାଶ କରି ଉତ୍କଳସାହିତ୍ୟ ତଥା ଓଡ଼ିଆପାଠକ-ମାନଙ୍କର ଏକ ଅଭାବ ଦୂର କରିଅଛନ୍ତି ।

ଅତୀତରେ ଭଞ୍ଜଙ୍କର ବହୁକାବ୍ୟ ଓ କବିତା ସଟୀକ ପ୍ରକାଶିତ ହୋଇ ପ୍ରଚଳିତ ହୋଇଅଛି । ପ୍ରତାପରାୟଙ୍କ ପ୍ରକାଶିତ 'ଲାବଣ୍ୟବତୀ' ବ୍ୟତୀତ ଅନ୍ୟ ସମସ୍ତ ପୁସ୍ତକରେ କେବଳ ଭାବାର୍ଥ ଛଡ଼ା ଅନ୍ୟ କିଛି ପଢ଼ିବାକୁ ମିଳେନାହିଁ, ମାତ୍ର ତରୁଣ ଲେଖକ ବିଶ୍ୱନାଥଙ୍କ ଟୀକା ଏ ସମସ୍ତଙ୍କଠାରୁ ଏକ ଉଜ୍ଜ୍ୱଳ ବ୍ୟତିକ୍ରମ । କବି ସମ୍ରାଟ୍ ଭଞ୍ଜଙ୍କ ପରିଶାଳିକ କବିଙ୍କର ଦୁର୍ବୋଧ 'ଯମକରାଜ-ଚଉତିଶା' ର ଟୀକା ରଚନା କରିବା ସାଧନା ସାପେକ୍ଷ । ସେଥିପାଇଁ ବୋଧହୁଏ ଆଜି ପର୍ଯ୍ୟନ୍ତ ଏହି କ୍ଷୁଦ୍ର କବିତାର ଟୀକା ପ୍ରଣୟନ କରିବାକୁ କେହି ସାହସ କରି ନ ଥିଲେ । ମାତ୍ର ଶ୍ରୀମାନ୍ ବିଶ୍ୱନାଥ ତାହାର ଏକ ସାର୍ଥକ ଟୀକା ପ୍ରଣୟନ କରି ନିଜର ସାଧନା ତଥା ବିଚାର ବୁଦ୍ଧିର ଯଥେଷ୍ଟ ପରିଚୟ ଦେଇଅଛନ୍ତି ।

ଭଞ୍ଜୀୟ ସାହିତ୍ୟ ଆଜଯାଏ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇନାହିଁ । ଯେଉଁ କେତୋଟି ପ୍ରକାଶିତ ଓ ପ୍ରଚଳିତ, ସେ ସବୁର ଶୁଦ୍ଧ ତଥା ସଟୀକ ସଂସ୍କରଣ ମଧ୍ୟ ସମ୍ଭବ ହୋଇନାହିଁ । ତେଣୁ ଭଞ୍ଜଙ୍କ ରଚନାର କେବଳ ବିଭିନ୍ନ ପାଠ ଦେଖିବାକୁ ମିଳୁନାହିଁ, ବହୁ ଅର୍ଥ ମଧ୍ୟ ହେବାର ଦେଖାଯାଉଅଛି, ନିଜେ ଉପେନ୍ଦ୍ର ଭଞ୍ଜ ରଚନା କଲାବେଳେ ଏତେ ଅର୍ଥ ଚିନ୍ତାକରି ଥିଲେ କି ନାହିଁ, ସେ କଥା ଆଜି ଭାବିହୁଏ ନାହିଁ । ଏହି ପ୍ରସଙ୍ଗରେ ପ୍ରସିଦ୍ଧ ସମାଲୋଚକ **Abercrombie** ଙ୍କର ଗୋଟିଏ ଉକ୍ତି ମନେପଡ଼େ । ବଡ଼ ବଡ଼ ପ୍ରତିଭା-

ସପନ୍ନ କବିଙ୍କ ସମ୍ପର୍କରେ ସେ କହିଥିଲେ—"Like prophets and oracular persons, Who also say many fine things without knowing what it is they are saying." (Introduction, 'Principal of literary criticism' )

ଭବିଷ୍ୟତ୍ ବକ୍ତା ଅଥବା ଅଲୌକିକ ପୁରୁଷମାନଙ୍କ ଭଳି କବିମାନେ ମଧ୍ୟ ଅନେକ ଚମତ୍କାର କଥା କହିଥାନ୍ତି, ଯେଉଁ ବିଷୟରେ ଅନେକ ସମୟରେ ସେମାନଙ୍କର ସ୍ପଷ୍ଟ ଧାରଣା ନ ଥାଏ । ସମାଲୋଚକ ଓ ବ୍ୟାଖ୍ୟାକାରଗଣ ସେ ସୂତ୍ରକର ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ କରି ସାଧାରଣ ପାଠକସମାଜରେ କବିଙ୍କର ପ୍ରକୃତ ମହତ୍ତ୍ୱ ଦେଖାଇ ଦିଅନ୍ତି । ସେଥିପାଇଁ ଯୁଗେ ଯୁଗେ କବିମାନେ ଆଗ୍ରହୀ ପାଠକ ଓ ରସିକମାନଙ୍କ ବିଚାରପାଇଁ ସେମାନଙ୍କ ରଚନା ଉଦ୍ଦିଷ୍ଟ କରିଥାନ୍ତି ।

ଶ୍ରୀମାନ୍ ବିଶ୍ୱନାଥ ବାସ୍ତବିକ ଜଣେ ଚିନ୍ତାର ପାଠକ ଓ ରସଗ୍ରାହୀ ଆଲୋଚକ, ତେଣୁ ସେ ଗତାନୁଗତିକ ସ୍ରୋତରେ ଭଞ୍ଜଙ୍କ କବିତାର ଟୀକା ପ୍ରଦାନ କରି ବିଭିନ୍ନ ଇଂରାଜୀ କାବ୍ୟ ଓ ସଂସ୍କୃତ କାବ୍ୟମାନଙ୍କର ଉଦ୍ଧୃତାଂଶ ସହ ତୁଳନାତ୍ମକ ବିଚାର କରି ତାଙ୍କର ବ୍ୟାଖ୍ୟାକୁ ଅଧିକ ପ୍ରମାଣିତ କରିବା ସଙ୍ଗେ ସଙ୍ଗେ ହୃଦୟଗ୍ରାହୀ ମଧ୍ୟ କରିଛନ୍ତି ।

ତାଙ୍କ ଲେଖନୀରେ ପୁଷ୍ପଚନ୍ଦନ ବୃଷ୍ଟି ହେଉ ।

ପଠାଣି ପଟ୍ଟନାୟକ

## ଶ୍ରୀ ରାମଚନ୍ଦ୍ର ମହାପାତ୍ର, ଏମ୍. ଏ. ଏଲ୍, ଟି, କାବ୍ୟତୀର୍ଥ

ଭୂତପୂର୍ବ ଅଧ୍ୟକ୍ଷ, ସଦାଶିବ ସଂସ୍କୃତ କଲେଜ, ପୁରୀ ।

ତରୁଣକବି ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ କୃତ "ସମକରାଜ ଚଉତିଶାର" ଟୀକା ପାଠ କରି ମୁଁ ଯେ କେବଳ ଆନନ୍ଦିତ ହୋଇଅଛି ତାହାନୁହେଁ, ସମଧିକ ବିସ୍ମିତ ମଧ୍ୟ ହୋଇଅଛି । ଉତ୍କଳଗୌରବ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କର ଦୁରୂହ ଗ୍ରନ୍ଥ-ରାଜ୍ୟରେ ପ୍ରବେଶ କରି ଆନନ୍ଦ ଉପଭୋଗ କରିବା ବହୁଜ୍ଞାନ ଓ ସାଧନାସାପେକ୍ଷ, ଏହା ଅନୁଭବୀମାତ୍ରକେ ହୃଦୟଙ୍ଗମ କରିଥିବେ । ଶବ୍ଦାର୍ଥର କଠିନତା ଓ ଭାବର ଗମ୍ଭୀରତା ପାଠକଙ୍କୁ ବହୁ-କ୍ଷେତ୍ରରେ ହତୋତ୍ସାହ କରି ପକାଏ । ଏ କ୍ଷେତ୍ରରେ ତରୁଣକବି ନାନାଗ୍ରନ୍ଥରୁ ତୁଳନାତ୍ମକ ଉପାଦେୟ ଦୃଷ୍ଟାନ୍ତମାନ ପ୍ରଦର୍ଶନ କରି ଯେଉଁ ପ୍ରାଞ୍ଜଳ ଟୀକା କରିଅଛନ୍ତି, ତାହା ତାଙ୍କର ଅଧ୍ୟବସାୟ ଓ ଯଥାର୍ଥ ସାଧନାର ସ୍ପଷ୍ଟ ପ୍ରମାଣ ଦେଉଅଛି । ଏହି କାର୍ଯ୍ୟରେ ନିଷ୍ଠା ରକ୍ଷିପାରିଲେ ଭବିଷ୍ୟତରେ ସେ ଉତ୍କଳବାଣୀପୀଠକୁ ସମଧିକ ଅଲଂକୃତ କରିପାରିବେ, ଏଥିରେ ସନ୍ଦେହ ନାହିଁ । ତାଙ୍କର ଏହି ଉଦ୍ୟମ ସର୍ବଥା ପ୍ରଶଂସନୀୟ । ମୁଁ ତାହାଙ୍କୁ ଆଶୀର୍ବାଦ କରି ତାହାଙ୍କର ସୁଦୀର୍ଘ ସମୁନ୍ନତ ସାହିତ୍ୟିକ-ଜୀବନ କାମନା କରୁଅଛି । ଇତି ।

ମାର୍କଣ୍ଡେଶ୍ୱରସାହି, ପୁରୀ — ଶ୍ରୀ ରାମଚନ୍ଦ୍ର ମହାପାତ୍ର

୮-୩-୧୯୫୮

---

ଶ୍ରୀ ବ୍ରଜବିହାରୀ ମିଶ୍ର

ପୋଲିସ ହାଉସ୍
ଆଜମିର
୨୨-୪-୫୭

କଲ୍ୟାଣୀଷୁ ବିଶ୍ୱନାଥ,

ଭଞ୍ଜଙ୍କର ଯମକରାଜ ଚଉତିଶାର ଟୀକା ଉତ୍କଳ ସାହିତ୍ୟର ଚର୍ଚ୍ଚାରେ ଦେଶକୁ ଆହୁରି ଏକପାଦ ଆଗେ ବଢ଼ାଇ ପାରିଛି ବୋଲି ମୋର ମନେ ହୁଏ । ଏହା ଆମୂଳଚୂଳ ପୁଙ୍ଖାନୁପୁଙ୍ଖ ପାଠ କରି ମୋର କ୍ଷୁଦ୍ର ବୁଦ୍ଧିରେ ତୁମ୍ଭର ଶ୍ରମସ୍ୱୀକାର ସାର୍ଥକ ହୋଇଛି ବୋଲି ବିବେଚନା କରୁଛି । ମଲ୍ଲିନାଥ କାଳିଦାସଙ୍କର ଟୀକା କରି ତାଙ୍କର ପାଣ୍ଡିତ୍ୟ ଓ ମହତ୍ତ୍ୱ ବଢ଼ାଇବା ପରି ଉତ୍କଳ ସାହିତ୍ୟ ଚର୍ଚ୍ଚାରେ ତୁମ୍ଭର ଟୀକା ତାର ଅନ୍ତରଗତର ମର୍ଯ୍ୟାଦା ମଧ୍ୟ ବଢ଼ାଇବ ।

ଶୁଭାକାଙ୍କ୍ଷୀ
ଶ୍ରୀ ବ୍ରଜବିହାରୀ ମିଶ୍ର

---

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ,
ନାଟ୍ୟାଗ୍ରଣୀ

କବିନିବାସ
କଟକ-୧
୨୭-୧-୧୯୫୮

ଶ୍ରୀମାନ୍ ବିଶ୍ୱନାଥ କରଙ୍କର କେତେ ଲେଖା ଭିତରୁ ଖଣ୍ଡିଏ ଲେଖା ଯମକରାଜ ଚଉତିଶା — ଏ ଖଣ୍ଡିକୁ ସଟୀକ ଯମକରାଜ ଚଉତିଶା ବୋଲି ଉଦ୍ୟମମାନ ନାଁ ଦେଇଛନ୍ତି । ମୁଁ ଆମୂଳାନ୍ତ ଏ ସାନ ବହିଟି ପଢ଼ିଛି । କବିଙ୍କୁ ମୁଁ ମୋ ଦୃଷ୍ଟିକୋଣରୁ କହିବି – ସେ 'ସଟୀକ'— ଏଇ ଶବ୍ଦଟି ଯୋଖି ଭୁଲ କରିଛନ୍ତି । ଟୀକା ବୋଇଲେ ଅର୍ଥ । ମାତ୍ର ଏ ଲେଖାରେ କେବଳ ଟୀକା ନାହିଁ – ଠାଏ ଠାଏ ଉଦାହରଣ – ସମଭାବସମ୍ପନ୍ନ ରଚନାମାନ ଥୋଇ ଗୋଟିଏ ସୁନ୍ଦର ନବୀନଧାରା ସୃଷ୍ଟି କରିଛନ୍ତି । ଶ୍ରୀମାନ୍ ବିଶ୍ୱନାଥ କରଙ୍କ ଚିନ୍ତା, ଶକ୍ତି ଓ ସାଧନା ମୂଳରେ ମାଆ ସରସ୍ୱତୀଙ୍କର ଆଶୀର୍ବାଦ ଫୁଲପାଖୁଡ଼ା ବର୍ଷି ହୋଇଥିବାର ପ୍ରମାଣ ଦେଇଛନ୍ତି । ଏଥିଁ ଅଧିକ ମୁଁ କିଛି କହିବି ନାହିଁ ।

ଜଗନ୍ନାଥେ ତାଙ୍କୁ ଦୀର୍ଘାୟୁ କରି ରଖିଥାଆନ୍ତୁ । ଆମ ଗନ୍ତାଘର ସେ ବଢ଼ାଇବେ ଏପରି ଦୃଢ଼ଧାରଣା ମୋର ଅଛି ।

**କାଳୀଚରଣ ପଟ୍ଟନାୟକ**

---

ଅଧ୍ୟାପକ **ଶ୍ରୀ ରଙ୍ଗାଧର ଷଡଙ୍ଗୀ**, ଏମ୍, ଏ, (ବନାରସ)
ଖ୍ରୀଷ୍ଟକଲେଜ, କଟକ

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ବିରଚିତ "ଯମକରାଜ ଚଉତିଶା" ଚିତ୍ରକାବ୍ୟ ସୃଷ୍ଟିର ଏକ ଅନବଦ୍ୟ ପ୍ରତୀକ । ସଂସ୍କୃତ ସାହିତ୍ୟରେ ଘଟକର୍ପର ଉତ୍କୃଷ୍ଟ ଯମକରଚନା ପାଇଁ ବିଖ୍ୟାତ । କିନ୍ତୁ କବିସମ୍ରାଟଙ୍କ ଯମକରଚନା ଦେଖିଲେ ସେ ଯେ ପୂର୍ବବର୍ତ୍ତୀ କବିମାନଙ୍କୁ ଅତିମାତ୍ରାରେ ଅତିକ୍ରମ କରି ପାରିଛନ୍ତି, ଏ କଥା ସହଜରେ ଅନୁମାନ କରିହେବ । "ଯମକରାଜ-ଚଉତିଶା"ରେ ଶବ୍ଦକ୍ଲିଷ୍ଟତା ଅଛି ସତ; ମାତ୍ର ତହିଁରେ ଭାବଗାମ୍ଭୀର୍ଯ୍ୟ ଓ ରସପ୍ରାଚୁର୍ଯ୍ୟ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । କବିବନ୍ଧୁ ଶ୍ରୀ ବିଶ୍ୱନାଥ କର ମହୋଦୟ ଏହାର ସର୍ବପ୍ରଥମ ଟୀକା ରଚନା କରିଅଛନ୍ତି । ତାଙ୍କର ଟୀକା କେବଳ ଶବ୍ଦାର୍ଥ ପରିଚୟ ନୁହେଁ । ମଲ୍ଲିନାଥଶୈଳୀରୂପୀ ବିଭିନ୍ନ ଶାସ୍ତ୍ର ଆଲୋଡ଼ନ ତାହାର ବିଲକ୍ଷଣତା ସୂଚିତ କରେ । ବନ୍ଧୁ ବିଶ୍ୱନାଥ କରଙ୍କର ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଗଭୀର ଜ୍ଞାନ ତାଙ୍କୁ ବିଭିନ୍ନ ଶାସ୍ତ୍ର ଓ କାବ୍ୟ କବିତାର ସମାନ୍ତରାଳ ଉକ୍ତି ସଂଗ୍ରହ କରିବାରେ ସାହାଯ୍ୟ କରିଛି । ତାଙ୍କର ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ଅନେକଙ୍କ ଚିତ୍ରକାବ୍ୟ ଅଧମକୋଟୀର ବୋଲି ଆଲଂକାରିକମାନଙ୍କ ମତ । କିନ୍ତୁ ଶଂସିତ ଚଉତିଶା ତଥା ତାର ଟୀକା ଅନୁଶୀଳନ କଲେ ଏହି ଚିତ୍ରକାବ୍ୟର ବ୍ୟଞ୍ଜନାସମୃଦ୍ଧି ସ୍ପଷ୍ଟ ପ୍ରତୀତ ହୁଏ । ଓଡ଼ିଆ କାବ୍ୟରାଜ୍ୟରେ କବି ବିଶ୍ୱନାଥ କରଙ୍କ ଭଳି ଏତେ ତୁଳନା-ତ୍ମକ ଟୀକା କେହି ରଚନା କରିଛନ୍ତି ବୋଲି ମୋର ମନେ ହୁଏନାହିଁ । ତାହା କେବଳ ପରୀକ୍ଷାସାପେକ୍ଷ । ବର୍ତ୍ତମାନ ବହୁ ଅଧିକ ସଂଖ୍ୟାରେ ତୁଳନାତ୍ମକ ଉପାଦାନ ସଂଗ୍ରହ କରି ନୂତନ ସଂସ୍କରଣକୁ ଅଧିକ ଉପଭୋଗ୍ୟ କରିବାକୁ ସେ ପ୍ରୟାସୀ । ତାଙ୍କର ଏହି ଉଦ୍ୟମ ସାଫଲ୍ୟମଣ୍ଡିତ ହେଉ, ଏତିକି ମୋର ବିଭୁ-ପଦରେ ପ୍ରାର୍ଥନା ।

ଅଲମତିବିସ୍ତରେଣ । ଇତି ।

**ରଙ୍ଗାଧର ଷଡ଼ଙ୍ଗୀ**

୧୮-୪-୭୨

## ଗାୟକସମ୍ରାଟ୍ ସପ୍ତଗୁରୁ ଶ୍ରୀ ବିଶ୍ୱନାଥ ପଞ୍ଚଯୋଷୀ
### ତର୍କାଲଙ୍କାର (କାଶୀପୀଠ ସ୍ୱର୍ଣ୍ଣପଦକପ୍ରାପ୍ତ) କାବ୍ୟତୀର୍ଥ [ବାରାଣସୀ]

ଶ୍ରଦ୍ଧେୟ ବିଶ୍ୱନାଥ ବାବୁଙ୍କର ଅଦମ୍ୟ ଉତ୍ସାହବଳରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କର ଯମକରାଜ ଚଉତିଶାକୁ ବହୁ ଶାସ୍ତ୍ରାଲୋଚନା ଦ୍ୱାରା ଏବଂ ବିଭିନ୍ନ ପ୍ରକାର ଦିଗ୍‌ଦର୍ଶନ ପ୍ରଭାବରେ ଜନତାର ବୋଧଗମ୍ୟ ହେବା ଭଳି ଏ ଯେଉଁ ଟୀକା କରାଯାଇଅଛି ସେ ସବୁକୁ ପର୍ଯ୍ୟବେକ୍ଷଣ କରିବାରେ ମୋର ଅନ୍ତରକୁ ତାହା ଅତିଶୟ ଆନନ୍ଦ ଦେଇଛି । କାରଣ ମୋ [illegible]ତବ୍ୟରେ ଏହି ପୁସ୍ତକ ଉପରେ କୌଣସି ପ୍ରକାର ଟୀକା କରିବାରେ କେହି ପ୍ରୟାସୀ ହୋଇ ନ ଥିଲେ । ଉତ୍କଳ ଆକାଶରେ ଓଡ଼ିଆ ଭାଷାର ପ୍ରତିଭା ନିଷ୍ପ୍ରଭ ହୋଇ ଆସୁଥିଲାବେଳେ ପ୍ରାଚୀନ ଓଡ଼ିଆ ଭାଷାର ପୁନରୁଦ୍ଧାର କାର୍ଯ୍ୟରେ ପ୍ରୟାସୀ ହୋଇ ସେ ଓଡ଼ିଆ ସାହିତ୍ୟର ମୁଖକୁ ଉଜ୍ଜ୍ୱଳ କରିବାରେ ଯେତେଦୂର ଉତ୍ସାହୀ ହୋଇଛନ୍ତି ତାହା ବର୍ଣ୍ଣନାତୀତ । ଆଶା ଓ ବିଶ୍ୱାସ ପ୍ରତ୍ୟେକ ସାହିତ୍ୟପ୍ରେମୀ କର୍ତ୍ତୃକ ଏ ସଟୀକ ଗ୍ରନ୍ଥଟି ନିଃସନ୍ଦେହରେ ଆଦୃତ ହେବ ।

ଗାୟକସମ୍ରାଟ୍ ସପ୍ତଗୁରୁ ଶ୍ରୀ ବିଶ୍ୱନାଥ ପଞ୍ଚଯୋଷୀ
୧୬-୭-୭୭

---

## ଗାୟକ ଶିରୋମଣି ଶ୍ରୀ ନିରଞ୍ଜନ କର

ଶ୍ରୀମାନ୍ ବିଶ୍ୱନାଥ କରଙ୍କ ପ୍ରଣୀତ ସଟୀକ ଯମକରାଜ ଚଉତିଶା ପାଠ କରି ବିଶେଷ ଆନନ୍ଦିତ ଓ ଆଶ୍ଚର୍ଯ୍ୟାନ୍ୱିତ ହେଲି । ଯେହେତୁ ସେ ଖୁବ୍ କମ୍ ବୟସରେ ଭକ୍ତଙ୍କ ଏ ଜଟିଳ ସାହିତ୍ୟକୁ ପାଠକ ପାଠିକାମାନଙ୍କ ବୋଧଗମ୍ୟ ନିମିତ୍ତ ବହୁ ପରିଶ୍ରମ କରି ଶତାଧିକ ଉଦାହରଣ ଦେଇଅଛନ୍ତି । ଏହାପୂର୍ବରୁ ଏହା ଟୀକା ଅଭାବରୁ ବୋଧଗମ୍ୟ ହେଉ ନଥିଲା । ଆଜି ଏହାର ଟୀକା ଓ ପ୍ରତ୍ୟେକ କବିଙ୍କର ସାମଞ୍ଜସ୍ୟ ଉଦାହରଣ ଏହାକୁ ସୁଖପାଠ୍ୟ କରାଇଛି । ଏହା ପାଲାଗାୟକମାନଙ୍କର ଅମୂଲ୍ୟ ସମ୍ପଦ ଓ କଣ୍ଠର ମୁକ୍ତାହାର ତୁଲ୍ୟ ଶୋଭମାନ ହେବ । ଏଣୁ ସମସ୍ତ ପାଲାଗାୟକ ନିଶ୍ଚୟ ଉପଯୋଗକୃତ ହେବେ । ଏହାକୁ ଚର୍ଚ୍ଚା କରିବା ଦ୍ୱାରା ଉତ୍କଳକଳାର ଉତ୍କର୍ଷ ଅଭିବୃଦ୍ଧି ହେବ । ମୁଁ ବିଶ୍ୱନାଥ ବାବୁଙ୍କୁ ଆନ୍ତରିକ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଆଶୀର୍ବାଦ କରେ କି ଏହାଙ୍କର ଉଦ୍ୟମରେ ଅନ୍ୟାନ୍ୟ ଅମୂଲ୍ୟ ସମ୍ପଦ ଆମ୍ଭ ଉତ୍କଳ ସାହିତ୍ୟ ଭଣ୍ଡାରରେ ପୁଷ୍ପଗୁଚ୍ଛ ସ୍ୱରୂପ ରହୁ ।

ଶ୍ରୀ ନିରଞ୍ଜନ କର
୧୬-୨-୭୬

---

# କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କର ସଂକ୍ଷିପ୍ତ ପରିଚୟ

ଉତ୍କଳଜନନୀର ଯୋଗ୍ୟତମ ସନ୍ତାନ, କବି ଧନଞ୍ଜୟଭଞ୍ଜ ତଥା କବି ନୀଳକଣ୍ଠଭଞ୍ଜଙ୍କର ଉପଯୁକ୍ତ ଉତ୍ତର-ସୂରି, କବିକୁଳତିଳକ, କାବ୍ୟକବିତା-କୁଞ୍ଜ-ପୁଂସ୍କୋକିଳ, ସାହିତ୍ୟାକାଶ-ଭାସ୍ୱରଭାସ୍କର, ଉତ୍କଳସାହିତ୍ୟର ଯୁଗସ୍ରଷ୍ଟା, କାବ୍ୟ-ହର୍ମ୍ମ୍ୟ-ବିଶ୍ୱକର୍ମା, ଓଡ଼ିଶୀ ସଙ୍ଗୀତର ଆଦ୍ୟପ୍ରବର୍ତ୍ତକ, ଯମକାନୁପ୍ରାସାଦି-ଅଳଙ୍କାର-ଜନକ, ଶବ୍ଦବାରିଧିପାରଙ୍ଗତ, କାବ୍ୟଚ୍ଛଟା କୋବିଦ, ରଚନାଶୈଳୀବିଶାରଦ, ମୁମୂର୍ଷୁ-ଉତ୍କଳଭାଷା ସଞ୍ଜୀବନୀପ୍ରଦାୟକ, ସମାଲୋଚକ-ସଙ୍ଗୀତଜ୍ଞ-ପାଲଗାୟକ-ପ୍ରାତଃସ୍ମରଣୀୟ, ସକଳଶାସ୍ତ୍ରବିତ୍, ସମତୁଲଶବ୍ଦପ୍ରୟୋଗ-ଚତୁର, ରସିକମଣ୍ଡଳୀମୁକୁଟାଳଙ୍କାର, ବର୍ଣ୍ଣନାବିନ୍ୟାସ-ବାଜିକର, ଚିତ୍ରବର୍ଣ୍ଣନ-ଧୁରନ୍ଧର, କମନୀୟଭାଷାପ୍ରୟୋଗକୁଶଳୀ, ସରସ-ସୁନ୍ଦରସାହିତ୍ୟସ୍ରକ୍, ରସାଳସଂସ୍କୃତକାବ୍ୟକଳାପକୁଶଳୀ, ରସଗ୍ରାହିପାଠକ-ହୃଚ୍ଚକୋର-ଚନ୍ଦ୍ରମା, ସାହିତ୍ୟାଲୋଚକଚିତ୍ତସମୁଦ୍ରୋଦ୍ବେଳକ-କବିତା-କୌମୁଦୀବର୍ଷୁକ, ଶ୍ରୀ ରଘୁନାଥ-ପଦାରବିନ୍ଦ-ମକରନ୍ଦ-ପାନ-ପୁଷ୍ଟ-ମଧୁପ, ଅଧୀତ ସଂସ୍କୃତକାବ୍ୟ-ନାଟକାଲଙ୍କାରାଦି-ବିଦ୍ୟ, ଭାବୁକ-ରସଗ୍ରାହି-ପାଠକ-ଚିତ୍ତବିମୋହକ, ରସାନୁଭୂତିସମ୍ପନ୍ନ-ଉଚ୍ଚାଙ୍ଗଭାବ-ବିସ୍ତାରକ, ସମସ୍ତଭାଷାଭାବ-

ସମନ୍ୱିତ-ଦ୍ରାକ୍ଷା-ଦାଡ଼ିମ-ରସ-ପରିବେଷକ, ଶବ୍ଦବ୍ରହ୍ମନବସୃଷ୍ଟିପ୍ରବର୍ତ୍ତକ, ଏକପତ୍ନୀକବ୍ରତପାଳକ,ଅବିକଳପ୍ରକୃତଚିତ୍ର-ଚିତ୍ରଣସିଦ୍ଧହସ୍ତ,ପୂର୍ବବର୍ତ୍ତିସକଳକବି-ଗର୍ବ-ପର୍ବତ-ବିଚୂର୍ଣ୍ଣକ, ସୁଧୀମଣ୍ଡଳୀ-ଚିତ୍ତବୃତ୍ତି ବିଦ୍ରାବକ, କବିଭ୍ରମର-ଶୁଦ୍ଧାନ୍ତଃକରଣ-କୈରବରଜନୀଶ, ଅଜ୍ଞାନ ତିମିରାନ୍ଧ-ଜ୍ଞାନାଞ୍ଜନ-ଶଲାକା-ପ୍ରଦାୟକ, କାବ୍ୟରସଗ୍ରାହୀଚିତ୍ତାହ୍ଲାଦକ, ପ୍ରାଣାଧିକ-ପ୍ରିୟତମ-ପତ୍ନୀ-ପ୍ରଣୟ-ପରିତୁଷ୍ଟ, ସକଳବିଦ୍ୟାଧାର-ସରସ୍ୱତୀ-ସାରସୁତ, ପରମଦୟାର୍ଦ୍ରଚିତ୍ତ, ସତ୍ୟ ଶିବ-ସୁନ୍ଦର-ସାହିତ୍ୟସ୍ରଷ୍ଟା, ଆପୂର୍ଣ୍ଣଚନ୍ଦ୍ର-ଚିରନ୍ତନ-ରଚନା-ସମ୍ପାଦକ, ସ୍ୱକୀୟ-ମର୍ମସ୍ପର୍ଶି-ସ୍ୱପ୍ନ ଭବିଷ୍ୟଦର୍ଶୀ, ବୃତ୍ତ-ଛନ୍ଦ-ବ୍ୟାକରଣବିଜ୍ଞ, ସମସାମୟିକ-ଅପରକବି କାବ୍ୟରସାସ୍ୱାଦକ, ବାଗ୍ମୀ-ବିଚିତ୍ରକର୍ମା, ସାରସ୍ୱତ-କ୍ଷେତ୍ର-ସାରସାଧକ, "ଉଚ୍ଛିଷ୍ଟଂ କାବ୍ୟଜଗତ୍" ପ୍ରବଚନସାର୍ଥକତାପ୍ରତିପାଦକ, ବିଶାଳୋଜ୍ଜ୍ୱଳ-ସକଳବର୍ଣ୍ଣିଶିଳ୍ପିବନ୍ଦନୀୟ, ଜାତୀୟ ସାହିତ୍ୟ-କର୍ଣ୍ଣଧାର, ଦୃଷ୍ଟ-ତାରକମନ୍ତ୍ରସିଦ୍ଧପୁରୁଷ, ସ୍ୱକୀୟାପ୍ରଣୟପକ୍ଷବାଦୀ, ପରକୀୟାପ୍ରଣୟବିରୋଧୀ, ସଙ୍ଗୀତସୁମନ-ସଞ୍ଜୀକରଣସୁଦକ୍ଷମାଳାକାର, ଉତ୍କଟପାଷଣ୍ଡ-ସମାଲୋଚକ-ଚିତ୍ତ-ଶିଳା-ଦ୍ରାବକ-ଚନ୍ଦ୍ରକାନ୍ତମଣି, ସାମାନ୍ୟ ସମ୍ପଦର ରାଜପଦବୀ ପଦବିମର୍ଦ୍ଦକ, ସୂଚ୍ୟଗ୍ର ତୀକ୍ଷ୍ଣବୁଦ୍ଧିସମ୍ପନ୍ନ, ସକଳସଦ୍‌ଗୁଣାବଳୀପାତ୍ର, ଅମ୍ଳାନ-ଅକ୍ଷୟ-ଯଶୋ ବିସ୍ତାରକ, ଯୋଗଜନ୍ମା ମହାପୁରୁଷ, ଅଦ୍ୟାବଧି ଅଦ୍ୱିତୀୟକବି, ନବରସସମନ୍ୱିତସାହିତ୍ୟକାର, କାବ୍ୟକେଳି-କୁଞ୍ଜ ମଧୁଗୁଞ୍ଜନରତ ଚଞ୍ଚରୀକ, ଅକପଟ ଚିତ୍ତସମ୍ପନ୍ନ, ଆଜୀବନ କାବ୍ୟନାୟିକା-ପ୍ରଣୟରସିକ, ଅବାରିତ ଭାବଧାରାନିର୍ଝରିଣୀରଚନାରଚକ, ଯୁବତୀପ୍ରିୟା-ବିରହ-କଷ୍ଟସହିଷ୍ଣୁ, ହିମାଚଳବତ୍ ଅଖଣ୍ଡଧୈର୍ଯ୍ୟଶାଳୀ, ବିବିଧଛନ୍ଦବନ୍ଧ ପ୍ରୟୋଗପୂର୍ବକ-କାବ୍ୟସୁନ୍ଦରୀ-ପ୍ରୀତିସଞ୍ଚାରକ, ଅପ୍ରତିହତପ୍ରତିଭାବାନ୍, ମହାମହିମମନୀଷୀ, ପ୍ରକୃତପର୍ଯ୍ୟବେକ୍ଷକ, ସାର୍ବଜନୀନ ସୂକ୍ତିବିରଚକ, ନିଃସ୍ୱାର୍ଥ-ପରସାହିତ୍ୟାରାଧକ, ଅନନ୍ୟସାଧାରଣ ସ୍ମୃତିଶକ୍ତିସମନ୍ୱିତ, ଅକଳଙ୍କଜ୍ଞାନାଗାର ଜନମନୋରଞ୍ଜନ କାବ୍ୟ କବିତାକୁଞ୍ଜ, ଅବିରତଲେଖନୀଚାଳକ, ମର୍ମସ୍ପର୍ଶି ବିରହଦଶାବର୍ଣ୍ଣନାବିବେଚକ, ଭାବଗର୍ଭକରଚନାସ୍ୱୟଂସିଦ୍ଧ, ସକଳ ସମସାମୟିକକବି ସନ୍ତତ ହିତଚିନ୍ତକ, ରଚନା ଚାତୁରୀ-ଐନ୍ଦ୍ରଜାଳିକ, ନିର୍ଭୀକ ମତବାଦୀ, ନିତ୍ୟନୂତନତଥ୍ୟ-ଆହରକ, ଅଲୌକିକଧୀଶକ୍ତିସମ୍ପନ୍ନ, ବୈଷ୍ଣବ

କରଣ ତଥା ନୈୟାୟିକ, ଶବ୍ଦବାରିଧିମନ୍ଥନଦକ୍ଷ-ନବରସସୁଧା-ଆସ୍ୱାଦକ, ଆଧ୍ୟାତ୍ମିକଗୁଣସମ୍ପନ୍ନ, ଗୁରୁଚରଣନଳିନଷଟ୍‌ପଦବର୍ତ୍ତିମାନ, ପ୍ରକୃତିଶତ୍ରୁଚକ୍ରଶପଥ, ଏକାଗ୍ରତାସ୍ୱଭାବଶାଳୀ, ଲବ୍ଧପ୍ରତିଷ୍ଠ, ଅଷ୍ଟାବଧାନସାଧକ, ଅଶବକ୍ଳିଷ୍ଟକଥିତ-ଶ୍ରୀ ଜଗନ୍ନାଥଅତତ୍ତ୍ୱବିତ୍, ନବନବ-ମନୋଜ୍ଞରୂପଧାରିଣୀ-ପ୍ରକୃତି-ପୂଜକ, ପ୍ରତ୍ୟୁତ୍ପନ୍ନମତି, ଗୁଣିଗଣଗୁଣଗ୍ରାହୀ, ବହୁକାବ୍ୟଗବେଷଣଭୂଷଣଭୂଷିତ, ସମୁଜ୍ଜ୍ୱଳ ପ୍ରତିଭାପ୍ରତିଭାତ, ସତ୍‌କବିତାସ୍ୱାଦକ, ଉଦାରଚେତା, ବିବିଧବିଜ୍ଞାନ-ବିଳାସୀ, ବିବୁଧବୋଧବାକ୍ୟରଚନାପ୍ରବୀଣ, ସମୁନ୍ନତ କଳା କୃଷ୍ଟି ସମ୍ପାଦକ, ଗୁଣି-ଜନମାନସକାସାରସଞ୍ଚାରିକଳହଂସ, ସୁଦୂରଦ୍ରଷ୍ଟା, ସମାଜସଂସ୍କାରକ, ସତ୍‌ସାହିତ୍ୟରଚନାନିଷ୍ଠ, ନାରିକେଳରସାଳଭକ୍ଷ୍ୟୋପମ – ଦର୍ପଣମଧୁର କାନ୍ତକ୍ଳିଷ୍ଟ – କାବ୍ୟକବିତାକୃତ୍, କବିକୁଳକଣ୍ଠ, ଉପେନ୍ଦ୍ର ଭଞ୍ଜ ସମ୍ଭୂତ ରାଜବଂଶରେ ରାଜକବି ନୀଳକଣ୍ଠ ଭଞ୍ଜଙ୍କର ଔରସରେ ୧୮୭୦ ଖ୍ରୀଷ୍ଟାବ୍ଦ ଶ୍ରୀପଞ୍ଚମୀ ଦିନ, ଜନନୀର କୁକ୍ଷିଗତ ଅନ୍ଧକାର ଭେଦକରି ମର୍ତ୍ତ୍ୟଲୋକର ସନ୍ଧାନ ଲାଭକଲେ ।

ବାଲ୍ୟକାଳରୁହିଁ ତାଙ୍କର କବିତ୍ୱ ସ୍ଫୁରଣ ଦର୍ଶନରେ ତାଙ୍କର ପିତାମହ ସ୍ୱକବି ଧନଞ୍ଜୟଭଞ୍ଜ ବିସ୍ମିତ ହୋଇଥିଲେ । ବାଣପୁରର ରାଜା ଅଚ୍ୟୁତ ହରିଚନ୍ଦନ ରାଜାଙ୍କର ପରମା ସୁନ୍ଦରୀ, ସୁଚରିତ୍ରା, ରସବତୀ, ବିଦ୍ୟୋତ୍ସାହିନୀ ଓ ପତିପ୍ରାଣା ଜ୍ୟେଷ୍ଠା କନ୍ୟାଙ୍କର ପାଣିଗ୍ରହଣପୂର୍ବକ ତାଙ୍କର ସାହଚର୍ଯ୍ୟ ଲାଭକରିବା ଫଳରେ ତାଙ୍କର ପଲ୍ଲବିତ କବିତ୍ୱ ପୁଷ୍ପିତ ହୋଇଉଠିଲା । ରାମତାରକମନ୍ତ୍ର ସିଦ୍ଧିଲାଭ କରି ସେ ରଚନା କରିଥିଲେ ତାଙ୍କର ମହାକାବ୍ୟ "ବୈଦେହୀଶ ବିଳାସ ।" କିଛିକାଳ ପରେ "କାଳସ୍ୟ କୁଟିଳା ଗତିଃ"ରେ ଯୁବରାଜ ଉପେନ୍ଦ୍ରଭଞ୍ଜ ତାଙ୍କର ପ୍ରାଣାଧିକା ପ୍ରିୟତମା ପତ୍ନୀଙ୍କର ଅକାଳ ବିୟୋଗ ଜନିତ ଦୁଃଖାର୍ଣ୍ଣବରେ ନିମଜ୍ଜିତ ହୋଇ ସେହି ମଧୁର ସ୍ମୃତିକୁ ତାଙ୍କର ଅମରକାବ୍ୟ ଲାବଣ୍ୟବତୀ, ପ୍ରେମସୁଧାନିଧି, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସଲେଖା ଓ ରସିକହାରାବଳୀ ପ୍ରଭୃତିରେ ରୂପରେଖ ଦେଲେ । ଯୌବନର ପ୍ରାରମ୍ଭରେହିଁ ନିଜର ପତ୍ନୀବିଚ୍ଛେଦବ୍ୟଥାରେ ଅଧୀର ହେଲେହେଁ ସେ ତାଙ୍କର ପୂର୍ବବଂଶଜମାନଙ୍କ ପରି ଦ୍ୱିତୀୟଦାର ପରିଗ୍ରହ ନ କରି କାବ୍ୟନାୟିକାର

ନୈସର୍ଗିକ ପ୍ରେମରେ ଆତ୍ମବିସ୍ମୃତ ହୋଇଥିଲେ । ଅହର୍ନିଶ କାବ୍ୟରଚନା, କାବ୍ୟଚର୍ଚ୍ଚା ତଥା ଶାସ୍ତ୍ରାଧ୍ୟୟନରତ ହୋଇ ସେ କ୍ଷଣିକଜଗତର ଅସ୍ତିତ୍ୱ ଏପରିକି ନିଜର ସତ୍ତା ମଧ୍ୟ ପାଶୋରି ଦେଉଥିଲେ ।

ଅଧ୍ୟବସାୟୀ ତଥା ଏକାଗ୍ରଚିତ୍ତ ଉପେନ୍ଦ୍ର ଭଞ୍ଜ ସମସ୍ତ ସଂସ୍କୃତକାବ୍ୟ, ନାଟକ, ଅଲଙ୍କାର, କୋଷଗ୍ରନ୍ଥ, ଦର୍ଶନଶାସ୍ତ୍ର, ବେଦ ବେଦାଙ୍ଗ, ଉପନିଷଦ ରାଜନୀତି, ଅର୍ଥନୀତି, କଳାବିଦ୍ୟା, ଅଷ୍ଟାଦଶ ପୁରାଣ, ଇତିହାସ, ଭୂଗୋଳ, ଆୟୁର୍ବେଦ, ଧନୁର୍ବେଦ, ଜ୍ୟୋତିଷ, କର୍ମକାଣ୍ଡ ଓ ଛନ୍ଦଶାସ୍ତ୍ର ପ୍ରଭୃତି ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିଲେ । ତାଙ୍କର କାବ୍ୟମାନଙ୍କରେ ଅଲଙ୍କାର ବିନ୍ୟାସ, ବର୍ଣ୍ଣନାଶୈଳୀ, ଭାଷାସମୃଦ୍ଧି, ଗୁଣ, ବୃତ୍ତି, ରୀତି, ଶବ୍ଦାଡମ୍ବର, କାବ୍ୟଲକ୍ଷଣ ତଥା ବ୍ୟଞ୍ଜନା ଯେଉଁ ପରିମାଣରେ ଦୃଷ୍ଟିଗୋଚର ହୁଏ ତାହା ଅନ୍ୟ କବିମାନଙ୍କ କାବ୍ୟରେ ବିରଳ । ତାଙ୍କର ପ୍ରତ୍ୟେକ କାବ୍ୟର ପ୍ରତିପଦ, ପ୍ରତି ବର୍ଣ୍ଣନା ଏପରିକି ପ୍ରତ୍ୟେକ ଶବ୍ଦର ମଧ୍ୟ ଯଥାର୍ଥ ଗୁରୁତ୍ୱ ଅଛି । ଯଥା— "ବଢ଼ାଇଦେଲେ ପସ୍ତର ଭାବଗ୍ରାହୀ ରଘୁବୀର ପସ୍ତର ଷୋଳିତ କରି ବସନେ ପୋଛି" ପଦରେ "ଭାବଗ୍ରାହୀ" ଶବ୍ଦର ଗୁରୁତ୍ୱ ଏତେ ବେଶୀ ଯେ ଏ ଶବ୍ଦ ବ୍ୟତୀତ ଅନ୍ୟ ଶବ୍ଦ ଏଠାରେ ପ୍ରଯୁକ୍ତ ନୁହେଁ । ଶବ୍ଦଯୋଜନା, ରସସମୃଦ୍ଧି, ଅଳଙ୍କାର ପ୍ରୟୋଗ ତଥା ଭାଷାବୈଶିଷ୍ଟ୍ୟରେ ସେ ପୃଥିବୀର ସମସ୍ତ କବିଙ୍କୁ ଅତିକ୍ରମ କରିଯାଇଛନ୍ତି । ତାଙ୍କର ରଚନାରେ ଯେଉଁ ପରିମାଣରେ ଯମକ ଅନୁପ୍ରାସ, ଉପମା, ଉତ୍ପ୍ରେକ୍ଷା, ବକ୍ରୋକ୍ତି, ବନ୍ଧ, ଲୋମ ବିଲୋମ, ଅଭଙ୍ଗ-ଶ୍ଳେଷ, ସଭଙ୍ଗଶ୍ଳେଷ, ଭଙ୍ଗାଭଙ୍ଗଶ୍ଳେଷ, ଦତ୍ତାକ୍ଷର ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ଅନ୍ତର୍ଲିପି ଓ ବହିର୍ଲିପି ପ୍ରଭୃତି ଅଲଙ୍କାର ପରିଲକ୍ଷିତ ହୁଏ, ପୃଥିବୀର କୌଣସି କାବ୍ୟକବିତାରେ ତାହା ପରିଲକ୍ଷିତ ହୁଏନାହିଁ । ତାଙ୍କର ଶବ୍ଦଯୋଜନାରେ ଶୃଙ୍ଖଳା, ସିଂହାବଲୋକନ, ବ୍ୟାଘ୍ରଗତି, ଗୋମୂତ୍ରଛନ୍ଦ ଓ ମେଷଯୁଦ୍ଧ ପ୍ରଭୃତିର ପ୍ରୟୋଗ ଅଛି । ପ୍ରକୃତି ବର୍ଣ୍ଣନା ଛଳରେ ସେ ନଦନଦୀ, ସରୋବର, ସମୁଦ୍ର ପଶୁ, ପକ୍ଷୀ, ବୃକ୍ଷଲତା, ଆକାଶ, ବନ, ଉପବନ, ପର୍ବତ, ନଗର, ନଗରୀ, ତୀର୍ଥସ୍ଥାନ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ପୁଷ୍ପ, ଫଳ, ପ୍ରଭାତ ଓ ସନ୍ଧ୍ୟା ପ୍ରଭୃତିର ନିଖୁଣ ଚିତ୍ର ଦେଇଛନ୍ତି । ଏତଦ୍‌ବ୍ୟତୀତ ସେକାଳର ସମାଜଚିତ୍ର, ଆଚାରବ୍ୟବହାର,

ଗୃହଚାଳନ, ବାଣିଜ୍ୟ, ଯୁଦ୍ଧ, କୃଷି, ଶାସନ ଓ ରାଜନୀତି ବିଷୟରେ ମଧ୍ୟ ସେ ବିଶଦ ବର୍ଣ୍ଣନା କରିଛନ୍ତି ।

ଉପେନ୍ଦ୍ର ଭଞ୍ଜ ବିଷ୍ଣୁ—ଉପାସକ । ତାଙ୍କର ପ୍ରତ୍ୟେକ କାବ୍ୟରେ ସେ ନିଜକୁ ବିଷ୍ଣୁଭକ୍ତ ବୋଲି ପ୍ରତିପାଦନ କରିଛନ୍ତି । ତାଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଯୁଗଳମୂର୍ତ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ଲେଖିଛନ୍ତି:—

“ମୁକ୍ତି ଦେବା ଗୁପ୍ତ ରହିଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୁନେ କେ ବା ବୁଝିବ ପଯାରେ ।”

ଏଠାରେ ଯୁକ୍ତାକ୍ଷର ହେଉଛି “ଜଗନ୍ନାଥ” (ଜଗତ୍+ନାଥ) । ତାଙ୍କ ମତରେ ଜଗତର ଅର୍ଥ ହେଉଛି—ରାଧା ଓ ନାଥର ଅର୍ଥ—କୃଷ୍ଣ । ଏଣୁ ଜଗନ୍ନାଥ ହିଁ ରାଧାକୃଷ୍ଣଙ୍କର ଅପୂର୍ବ ସମନ୍ୱୟ ଓ ପରମ ଗତିମୁକ୍ତିଦାତା । ତାଙ୍କର ମହାକାବ୍ୟ ବୈଦେହୀଶବିଳାସର ଆଦ୍ୟ ଛାନ୍ଦରେ ତାଙ୍କର ବିଷ୍ଣୁ ଓ ସୂର୍ଯ୍ୟବନ୍ଦନା, “ବନ୍ଦଇ ଦୀନବାନ୍ଧବ ହରି ଯେ ତମଚୟ ଖଣ୍ଡନକାରୀ ସଦା କମଳାନନ୍ଦ ବିସ୍ତାରୀ ସ୍ୱଭାବେ ଉଦନ ଯେ । ବିଭୁ ଅନନ୍ତ ଅଙ୍କବିହାରୀ କର ପ୍ରତାପ ଯାର ସଞ୍ଚରି ନିଶାଚରଙ୍କ ଉଲ୍ଲାସ ହରି ପୁଜେ ସୁମନ ଯେ । ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ । ବଇକୁଣ୍ଠ-ପଙ୍କଜ-ଲୋକ-ତୋଷିତ ଯେ । ବିକାଶ ଅଖଣ୍ଡିତ ମଣ୍ଡଳେ ସିଂହରାଶିରେ କୀର୍ତ୍ତିତ କୋଳେ ଭବେ ତରଣି ହୋଇ ମଞ୍ଜୁଳେ ଗିରି ଉଦିତ ଯେ ।” ଆଦି ପଦମାନ ଅବନାରସତରଙ୍ଗର, “ରକ୍ଷଚୟଦରକର ସକଳ ସମସ୍ତ, ରକ୍ଷ ଚୟଦର କର ନବରସମସ୍ତ ।” ଲାବଣ୍ୟବତୀର “ଜୟ ଜୟ ଜୟ ରାମ ଜନକ ସୁଖଦ,” ଶ୍ରୀରାମ ହରଷନାଦରେ ସଦା ବିଶାରଦ । ଚନ୍ଦ୍ର ହାସ ଶୋଭାକର ସମନ୍ତ କାଳର, ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର ।” ପ୍ରଭୃତି ପଦାବଳୀରୁ ସେ ବିଷ୍ଣୁଭକ୍ତ ବୋଲି ପ୍ରମାଣିତ ହୁଏ । ତଥାପି ସେ ଶିବଙ୍କର ମଧ୍ୟ ଆରାଧକ ଥିଲେ । ତାଙ୍କର ରସଲେଖାର “ଜୟମକରକୁଣ୍ଡଳୀ କୁଣ୍ଡଳକୁଣ୍ଡଳୀ, ଘନସାରଶ୍ୟାମ ଘନସାରକାନ୍ତିଝଳ । ଜୟତ୍ରିପୁରମୋହନ ତ୍ରିପୁରଦହନ, ଖଗପୁଙ୍ଗବବାହନ ପୁଙ୍ଗବବାହନ ।”

ପ୍ରଭୃତି ପଦାବଳୀରୁ ତଥା ଲବଣ୍ୟବତୀର, ଅନନ୍ତ ଭୂଷଣ ବୃଷ ଧ୍ୱଜମୂର୍ତ୍ତ ସୁହୃଦ ଭବତାପ-ନାଶୀ, ଶ୍ରୀ ନିଳସ୍ଥ ଦ୍ୱିଜରାଜ-ବନ୍ଦନୀୟ ଜନକ ସୁଖକୁ ପ୍ରକାଶି । ସ୍ମରି । ମନେ ସେ ରାମଚନ୍ଦ୍ର ଶିବ । କହେ ଉପଇନ୍ଦ୍ର ଭଞ୍ଜ ବୀରବର ମୂର୍ଖଜନ କର୍ଣ୍ଣଦ୍ରବ ।" ଆଦି ପଦାବଳୀରୁ ସେ ବିଷ୍ଣୁ ତଥା ଶିବ ଉଭୟ ଦେବଙ୍କୁ ବନ୍ଦନା କରିବାର ପ୍ରମାଣ ମିଳେ ।

ସେ ନୃତ୍ୟଗ୍ରତୀକ୍ଷ୍ଣବୁଦ୍ଧିସମ୍ପନ୍ନ ହୋଇଥିବାରୁ ତାଙ୍କର ଜୀବଦ୍ଦଶାରେ ୬୧ ଖଣ୍ଡ କାବ୍ୟ କବିତା ପ୍ରଣୟନ କରିଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତକାବଳୀ ୨୧ ଖଣ୍ଡ ଓ ଅପ୍ରକାଶିତ ୪୦ ଖଣ୍ଡ ।

ପ୍ରକାଶିତ ପୁସ୍ତକାବଳୀ:—ବୈଦେହୀଶ ବିଳାସ, ଲବଣ୍ୟବତୀ, କୋଟି-ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ରସିକହାରାବଳୀ, ରସଲେଖା, ରସପଞ୍ଚକ, ରାମଲୀଳାମୃତ, ଛାନ୍ଦଭୂଷଣ, ଚଉପଦୀଚନ୍ଦ୍ର, ଚଉପଦୀଭୂଷଣ, ଚିତ୍ରକାବ୍ୟ-ବନ୍ଧୋଦୟ, କଳାକଉତୁକ, ସୁଭଦ୍ରାପରିଣୟ, ସୁବର୍ଣ୍ଣରେଖା, ଅବନାରସତରଙ୍ଗ, ବଜାରବୋଲି, ଯମକରାଜ ଚଉତିଶା; ଧରିପୋଇ, ଗୀତାଭିଧାନ ଓ ପଞ୍ଚସାୟକ ।

ଅପ୍ରକାଶିତ ପୁସ୍ତକାବଳୀ:—ତ୍ରୈଲୋକ୍ୟମୋହିନୀ, ହାସ୍ୟାର୍ଣ୍ଣବ, କଟପାସ୍ତା, ମୁକ୍ତାବତୀ, ବ୍ରଜଲୀଳା, ଚନ୍ଦ୍ରକଳା, ସଙ୍ଗୀତକୌମୁଦୀ, ଶୋଭାବତୀ, କଳାବତୀ, ଇଚ୍ଛାବତୀ, ଦୁର୍ଗାସ୍ତୁତି, ରସମଞ୍ଜରୀ, ବାରମାସୀ, ଲତା, ନୀଳାଦ୍ରିଶ ଚଉତିଶା, ଶ୍ରୀକୃଷ୍ଣବିହାର, ଗଜନିସ୍ତାରଣ, କାମକଳା, କୁଞ୍ଜବିହାର, ଗରୁଡ଼-ଗୀତ, କଳାକଣ୍ଟକ, ହେମମଞ୍ଜରୀ, ଚିତ୍ରରେଖା, ପ୍ରେମଲତା, ମନୋରମା, ଷଡ଼୍‌ଋତୁ, ରାହାସଲୀଳା, ପୁରୁଷୋତ୍ତମମାହାତ୍ମ୍ୟ, ଶଶିରେଖା, ଭାବବତୀ, ଚନ୍ଦ୍ରରେଖା, ଛତିଶରସ, ଛଅପୋଇ, ନଅପୋଇ, ବାରପୋଇ, ଷୋଳ-ପୋଇ; ବିଚିତ୍ର ତରଙ୍ଗିଣୀ, କଳ୍ପିତ କଳାରେଖା; ଶ୍ରୀରାମଲୀଳା, ଗାହା, ଦୋହା, ଚିତ୍ରଲେଖା, ଚମ୍ପୂ ଓ ସଙ୍ଗୀତ ଉପେନ୍ଦ୍ରଭଞ୍ଜ ।

ଏଣୁ ଯଥାର୍ଥରେ କବିବର ରାଧାନାଥ ରାୟ କହିଛନ୍ତି:—

"ଧନ୍ୟ ରଜକବି ଭୂମି ଜନମ ଭୂଷଣେ
ଜନ୍ମିଲ ଏ ପ୍ରଦେଶେ ହେ କବୀନ୍ଦ୍ରମଣି !
ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲ ଉପେନ୍ଦ୍ର ମଣି ଯେ ବଙ୍କୁଭୂଷଣେ
ସାଜାଇଛ ବୈଦେହୀଶେ ହେ କବିରତନ
ତୋମା ବିନା ସାଧ କାର ସାଜାଇ ଏମନ ?"

ଉପେନ୍ଦ୍ରଭଞ୍ଜଙ୍କୁ କେତେକ ସମାଲୋଚକ ଅଶ୍ଳୀଳ କବି ବୋଲି ବିଦ୍ରୂପ କରି ରାଧାନାଥଙ୍କୁ ପ୍ରଶଂସା କରିବାରେ ନିଜେ ରାଧାନାଥ ଦୁଃଖ ପ୍ରକାଶ କରି କହିଛନ୍ତି:—

"କାହିଁ ସେହି କାହିଁ ମୁହିଁ ଅକିଞ୍ଚନ
ଦେଖୁଥିଲି ଯିନା ଜାଗ୍ରତ ସ୍ୱପନ ।
ଭାଗ୍ୟବାନ ବେଣୁ ବାଣୀଙ୍କ କୁମର
କବି ବଳଦେବ, ଭଞ୍ଜ ବୀରବର ।"

କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଭାଷାରେ—ଉପଇନ୍ଦ୍ର ପଦ ଅଭି-ମନ୍ୟୁ ମନୁ, ପାଶୋର ନ ଯିବ ଦିନୁ ଦିନୁ ।"

ଐତିହାସିକ ହଣ୍ଟର ସାହେବଙ୍କ ମତରେ—"ପ୍ରାଚୀନ ଓଡ଼ିଆ କବିମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଅଗ୍ରଗଣ୍ୟ ।"

ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାର କହନ୍ତି—"ଉପେନ୍ଦ୍ର ଭଞ୍ଜ ସମସ୍ତଙ୍କର ସମ୍ମାନର ପାତ୍ର, ତାଙ୍କର ନାମ ବାଜୀକରର କାମ କରେ ।"

ମନମୋହନ ଚକ୍ରବର୍ତ୍ତୀଙ୍କ ଭାଷାରେ—"ଅଦ୍ଭୁତ ଶବ୍ଦବିନ୍ୟାସ ଓ ବିବିଧ ଅଳଙ୍କାର ପ୍ରୟୋଗରେ ଉପେନ୍ଦ୍ର ଭଞ୍ଜ ଅଦ୍ୱିତୀୟ ।

ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ ମତରେ—"ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟର ପ୍ରାଣଦାତା ।"

ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ରଙ୍କ ଭାଷାରେ—"ଯୁଗସାହିତ୍ୟର ବିଶେଷତ୍ୱ ପ୍ରକଟନ କରି ଯୁଗାବଧି ଉତ୍କଳ ସାହିତ୍ୟର ବଳିଷ୍ଠ, ରସାଳ, ଚିତ୍ତବୃତ୍ତି-ବିଦ୍ରାବକ ସାମଗ୍ରୀଗୁଡ଼ିକ ପରିବେଷଣ କରି ଯୁଗଯୁଗାବଧି ଉପେନ୍ଦ୍ର ଦେଦୀପ୍ୟମାନ ଓ ଅବିନଶ୍ୱର ।"

---

# ଯମକ ଅଳଙ୍କାର

ସତ୍ୟର୍ଥେ ପୃଥଗର୍ଥାୟାଃ ସ୍ୱରବ୍ୟଞ୍ଜନସଂହତେଃ
କ୍ରମେଣ ତେନୈବାବୃତ୍ତିର୍ଯମକଂ ବିନିଗଦ୍ୟତେ ।
(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

ବିଭିନ୍ନ ଅର୍ଥବୋଧକ ଏକପ୍ରକାର ଶବ୍ଦର ପୁନରାବୃତ୍ତି ହେଲେ ତାହାକୁ ଯମକ ଅଳଙ୍କାର ଆଖ୍ୟା ଦିଆଯାଏ ।

ଓଡ଼ିଆ ସାହିତ୍ୟରେ କୋଡ଼ିଏ ପ୍ରକାର ଯମକ ଦୃଷ୍ଟିଗୋଚର ହୁଏ । ସେ ସମସ୍ତ ଯମକଙ୍କର ଲକ୍ଷଣ ଉଦାହରଣ ସହ ନିମ୍ନରେ ପ୍ରଦତ୍ତ ହେଲା ।

୧ । **ଆଦ୍ୟଯମକ** – ଭିନ୍ନ ଅର୍ଥବୋଧକ ଏକ ଶବ୍ଦ ଏକ ଚରଣର ଆଦ୍ୟରେ ଦୁଇବାର ବ୍ୟବହୃତ ହେଲେ ତାହାକୁ ଆଦ୍ୟଯମକ କୁହାଯାଏ ।

ବିରଜ ବିରାଜ ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବନସ୍ଥନା ଏଥି ଖେଳା କରଇ ॥

(ବିରଜ—ପକ୍ଷିସମୂହ, ଶୋଭାପାଇ; ରାଜୀବ—ମୀନ, —ପଦ୍ମ)

ବଳି ବଳିପୁଷ୍ଟ ଝାମ୍ପେ ଆହାର ନେଉଛେ
ବଳି ବଳିଶୋଭିନୀ ତାହାର ନିବାରନ୍ତେ ॥

(ବଳି—ବାରଣ ନ ମାନି, ବଳିପୁଷ୍ଟ—କାକ, ବଳି ବଳିଶୋଭିନୀ—ତ୍ରିବଳିରେ ଶୋଭିନୀ ସୀତା ।)

୨ । **ମଧ୍ୟଯମକ** – ଭିନ୍ନାର୍ଥବୋଧକ ଏକ ଶବ୍ଦ ଏକ ଚରଣର ମଧ୍ୟରେ ଦୁଇଥର ବ୍ୟବହୃତ ହେଲେ ତାହାକୁ ମଧ୍ୟଯମକ କୁହାଯାଏ ।

ନବୀନ ଜୀମୂତ ଜୀମୂତସ୍ତନା କି ଏ ଉଦିତ
ଏ ନୀଳ କମଳ କମଳବନ୍ଧୁ ବନ୍ଧୁ ହେମନ୍ତ ॥

(ଜୀମୂତ – ମେଘ; ପର୍ବତ; କମଳ—ପଦ୍ମ, ଜଳ)

ଚନ୍ଦ୍ରକୁ କହେ କୁମାର ମାରକୁ କି ଏହି ନିକଟେ ଲଗାଇବ
ଶୁଣ ଜୀବ ଜୀବବଲ୍ଲଭୀ ଲଭିବା ଯାଏ କି ସ୍ୱର୍ଗ ଦେଖାଇବ
ଚନ୍ଦ୍ରମା, ସୁରସ ରସେ ରସାଇବ,
ନ ବସାଇ ତାକୁ ପଲକେ ପଲଙ୍କେ ଉରୁ ଉପରେ ବସାଇବ ॥

୩। **ପ୍ରାନ୍ତଯମକ** – ଭିନ୍ନାର୍ଥବୋଧକ ଏକ ଶବ୍ଦ ଏକଚରଣର ପ୍ରାନ୍ତରେ ଦୁଇଥର ବ୍ୟବହୃତ ହେଲେ ତାକୁ ପ୍ରାନ୍ତଯମକ କୁହାଯାଏ।

ବଣ ପ୍ରକାଶିଲା ସୁମନସର ସୁମନସର
ମହୀକି ଆଣିଲା ସୁମନସର ସୁମନଶର ॥

(ସୁମନସର—ଦେବତାମାନଙ୍କର, ଆନନ୍ଦର, ମନଲୋଭି ସୁନ୍ଦର ପୁଷ୍କରିଣୀ; ସୁମନଶର – କନ୍ଦର୍ପ)।

ମନସିଜ ଅସ୍ତ୍ର କାମୀ ନିଧନ
କେହି ବଞ୍ଚିବ କାଳ କାମିନୀ ଧନ
ଏ ଘୋର ସଙ୍କଟରୁ ଉପେନ୍ଦ୍ର ! ଭଞ୍ଜ
କହଇ ବୀରବର ଉପେନ୍ଦ୍ର ଭଞ୍ଜ।

(କାମୀ ନିଧନ—କାମୁକ କାମୁକୀ ହନ୍ତା, କାମିନୀ ଧନ – ନାରୀରତ୍ନ। ଉପେନ୍ଦ୍ର ! ହେ ବନ୍ଧୁ ! ଭଞ୍ଜ – ଭଞ୍ଜନକର, ଉପେନ୍ଦ୍ର ଭଞ୍ଜ – କବିସମ୍ରାଟ ।

୪। **ମାଳଯମକ**—ଭିନ୍ନାର୍ଥବୋଧକ ଏକ ଶବ୍ଦ ଏକ ଚରଣରେ ଦୁଇରୁ ବହୁବାର ବ୍ୟବହୃତ ହେଲେ ମାଳଯମକ ହୁଏ।

ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦଯୁତ କରେ ଭୂତ।
ବହଇ ନର୍ଝର ଝର ଝର ଅବିରତ
ବିଶେଷେ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ।

(ଚନ୍ଦ୍ର – ଚନ୍ଦନ, କର୍ପୂର, ଜଳ; ମନ୍ଦମନ୍ଦ – ଧୀର ଧୀର, ମନ୍ଦବୃତ – କୋକିଳ; ଝର୍ଝର– ଝରଣା, ଝରଝର—ଝରଣାର ଶବ୍ଦ, ତରଙ୍ଗ—ଲହରୀ, ରଙ୍ଗ – ରଙ୍ଗୀନ୍, ରଙ୍ଗଣୀ – ଏକଫୁଲ୍ ।)

୫ । **ସର୍ବଯମକ** – ପ୍ରବକର ପ୍ରଥମ ଚରଣ ଏବଂ ଦ୍ୱିତୀୟ ଚରଣରେ ପଦମାନ ଏକଶୃଙ୍ଖଳାରେ ବ୍ୟବହୃତ ହୋଇଥିଲେ ସର୍ବଯମକ ହୁଏ ।

ବଇଦେହୀ ସୁମନା ସୁମନା ଏ ସୁରଭି
ବଇଦେହୀ ସୁମନା ସୁମନା ଏ ସୁରଭି ॥

(ବଇଦେହୀ—ସୀତା, ପିପ୍ପଳୀବୃକ୍ଷ; ସୁମନା – ମାଳତୀଫୁଲ୍; ଲବଙ୍ଗ-ଗଛ; ପ୍ରୀତିଯୁକ୍ତା; ପଣ୍ଡିତା; ସୁରଭି – ବସନ୍ତ; ଜାଇଫଳ ଗଛ) ।

ଅହି-ମକର ତାପ ନାଶେ ଶୋଭି ସାରସ ଚକ୍ରେ
ଅ – ହିମକର ତାପ ନାଶେ ଶୋଭି ସାରସ—ଚକ୍ରେ ॥

(ଅହି-ମକର—ଚାପ ଓ ମଗର; ଅ – ହିମକର—ସୂର୍ଯ୍ୟ; ସାରସ ଚକ୍ରେ —ହଂସ ଓ ଚକ୍ରବାକରେ; ପଦ୍ମ ସମୂହରେ)

୬ । **ଯୁଗ୍ମଯମକ** – ପ୍ରତ୍ୟେକ ଚରଣରେ ଯେ କୌଣସି ସ୍ଥାନରେ ଦୁଇଟି ବର୍ଣ୍ଣ ଦୁଇଥର ବ୍ୟବହୃତ ହେଲେ ତାହାକୁ ଯୁଗ୍ମଯମକ ବୁଝାଯାଏ ।

ଯେବେ ବନ୍ଧୁ'ଦଣେ ଦଣେ                    ନୟନେ ନମିଷେ ମିଶେ
ବେଗେ ଭସ୍ମ କଲା ଅଣେ ଆସେ
ଜାନୁରେ ଅବଣେ ବସେ                    ସୁରସ କୂପ ହେ ପଶେ
କୋଳେ ଆନନ୍ଦପ୍ରଦା ହେ ଦାସେ
ଜଳଧର ! ରସି ମୁଁ ତନ୍ତୁଁ ଆଭାସେ ଭାଷେ
ଦିବା କେଳିବସେ ବାସେ                    ଘୋଡ଼ାଇ ହରଷେ ରସେ
ମଜ୍ଜିବୁ ଶୁଣି ହରଷେ ରସେ ।

ସୁକଳା କଳାକର ହାସ ସୁଧାର ଧାର ହରେ ଜୀବ କାତର ତର
ମୋ ତାପ ବାର ବାର ରୁ ତ ସଂସାର ସାର ସୁଯଶକୁ ବିସ୍ତାର ତାର
ପ୍ରାଣପ୍ରାଣ !

ନ ବନ୍ଧ ମୁଣ ଦର ଦର, ଦୁର୍ଗନ୍ଧ ଅଦେହର ହର
କୃପାରେ ବରବରନ ! ତୁ କଙ୍କର କର ନୋହିଲେ ନାହିଁ ଧର ଧର ॥

୭। ଆଦ୍ୟାନ୍ତଯମକ— ଏକ ପଦର ଆଦ୍ୟରେ ଯେଉଁ ଦୁଇବର୍ଣ୍ଣ ବ୍ୟବହୃତ ହୋଇଥାଏ, ସେହି ଦୁଇବର୍ଣ୍ଣ ପୁନଶ୍ଚ ପ୍ରାନ୍ତରେ ବ୍ୟବହୃତ ହେଲେ ଆଦ୍ୟାନ୍ତଯମକ ହୁଏ ।

ବନଜାକ୍ଷୀ ମୋ ଜୀବଜୀବନ,
ବନ ପ୍ରାନ୍ତେ ତା ବନ୍ଧୁ ଭବନ,
ବନ ନ ରହଇ ଦଣ୍ଡେ ନୟନରୁ କରି କବିତା ସ୍ରବ ସ୍ରବନ ॥

ସୁରମଣି ଅସୁର ସୁରତାପ ନାଶର ସାରଙ୍ଗ ମୂର୍ତ୍ତି ତୁ ଆଧାର
ବାରଣ ଦୁଃଖ ବାର କରକଦନ୍ତ ! କର ଧରମ କରଣ ଉଦ୍ଧର
ରସାସାର !
ବରଷ ସୁନାଗଶ୍ରବର, ହରଷେ ହୃଦଦାହ ହର
ଚରଣ ଅନୁଚର ନରବଧ୍ୱ ଧନୀର ପାରକର ଖ୍ୱ-ଅକୂପାର ॥

୮। ତ୍ରିବୃତ୍ତ ବା ତ୍ରିଭଙ୍ଗ ଯମକ—ଚରଣର ପ୍ରତ୍ୟେକ ପଦରେ ଦୁଇ ବା ତତୋଽଧିକ ବର୍ଣ୍ଣ ତିନିବାର ବ୍ୟବହୃତ ହେଲେ ତ୍ରିବୃତ୍ତ ଯମକ ହୁଏ ।

ଏବେହେଁ ପ୍ରବଳା ଦୁଃଖ ଦୁର୍ବଳା ହୋଇ ଅବଳାମଣି
ପଦଶୃଙ୍ଖଳା କଟୀମେଖଳା ଆଦି ଶୃଙ୍ଖଳା ମଣି ।
ସେ ଯୋଗଭଙ୍ଗୀ ବିଶେଷ ଭଙ୍ଗୀ ଶେଷ ତ୍ରିଭଙ୍ଗୀ ଗୀତ
ଶ୍ରୀ ରଘୁବୀର ଧ୍ୟାନରେ ବୀରବର କବିର କୃତ ॥

ବନ୍ଧୁ ମାନବୀ ସେ ତ ଯେତେ ମାତ୍ର ବିଶ୍ୱେତ
ହେବ ମାନବିକ୍ଷେତ ଧ୍ୱଂସି
ରମା ତନୁପାତଳୀ ସମେ ତନୁ ପାତଳୀ
ସମେ ବନ୍ଧୁ ପାତଳ ନାଶି
ସୁବଳାସୀ

ମୋତେ ରମ୍ଭା ସୁରମଣୀଙ୍କ; ସେ ଜ ସର ସୁରମଣୀନ୍ନ
ଧନ ତ ସ୍ୱରତରୁ ଗୁଳନା ସୁରତରୁ ଲକ୍ଷିତ ସ୍ୱରତରୁଣୀ କ ॥

୯ । ମହାଯମକ—ପ୍ରତ୍ୟେକ ଚରଣରେ ଏକ ଶବ୍ଦ ବହୁବାର ବ୍ୟବହୃତ ହେଲେ ତାହାକୁ ମହାଯମକ କୁହାଯାଏ ।

ଶରଦରେ ବଣାଇବା କଥା ଅସମ୍ଭବ
କାଳକଣ୍ଠ କାଳକଣ୍ଠ କାଳକଣ୍ଠ ହେବ ।
ସୁଧାକର ସୁଧାକର ସୁଧାକରପୁର
ରମଣୀ ରମଣୀର ମଣି ତ କାଗପୁର ॥

(କାଳକଣ୍ଠ – ମୟୂର, ଖଞ୍ଜନ, କଜଳପାଠି; ସୁଧାକର – ଚନ୍ଦ୍ର, କର୍ପୁର, ଚନ୍ଦ୍ରଶାଳା; ରମଣୀ – ନାରୀ, ଶ୍ରେଷ୍ଠା, ର – ଅଗ୍ନି, ମଣି —ମନେକର)

୧୦ । ଯମକରାଜ—ପଦର ଏକ ବା ତତୋଽଧିକ ଚରଣରେ ଭିନ୍ନ ଅର୍ଥବୋଧକ ଏକ ଶବ୍ଦ ବହୁବାର ବ୍ୟବହୃତ ହେଲେ ତାହାକୁ ଯମକରାଜ କୁହାଯାଏ ।

ପିଣ୍ଡୁଥିବେ ଏବେ ପୁଷ୍କର ପୁଷ୍କର ପୁଷ୍କର ତାହାର ସଜନୀ
ସଜନୀ ଧଣଥିବ ଗୁଣ୍ଡେ ପୁଷ୍କର ପୁଷ୍କର ପୁଷ୍କର ଗମନୀ
କୋକିଲ, ଶଶୀଆନନୀ ହେଲ ଦୁଃଖୀ
ଶୀର୍ଣ୍ଣ ହୋଇଥିବ ଅନାଇ ପୁଷ୍କର ପୁଷ୍କର କେତୁଥିବ ସଖୀ ॥

(ପୁଷ୍କର—ପଦ୍ମ, ପଦ୍ମପତ୍ର, ଜଳ; ସୂର୍ଯ୍ୟ; ଶିବ; ଗଜ, ବହ୍ନି; ମିଳନ)

୧୧ । ଏକାକ୍ଷରାଦ୍ୟଯମକ—ଏକମାତ୍ର ବର୍ଣ୍ଣ ପ୍ରତିଚରଣରେ ଆଦ୍ୟରେ ବ୍ୟବହୃତ ହେଲେ ଏକାକ୍ଷରାଦ୍ୟ ଯମକ ହୁଏ ।

ଝଲମୁଖ ନଳିନ ଝଣଜିତ ନୟନ ଝଷକେତନ ଶରଧର
ଝରଝର ନରତ ଝରୁଆଇ ଅମୃତ ଝଟକ ହାସରେ ତୋହର
ଝଲକ ଲି !
ଝଙ୍କାର ବାଣୀକଣା ଗିର; ଝନନ କଙ୍କିଣୀ ମଧୁର
ଝର୍ଝର ହୁହୁଂସକ ଝଲକାଦ ଏ ଦକ ଝଟତ ମୋହେ ଉନପୁର ॥

୧୨ । ଦ୍ୱିତୀୟବର୍ଣ୍ଣାଦ୍ୟଯମକ — ଚରଣର ପ୍ରତିପଦର ଆଦ୍ୟରେ ଏକ ବର୍ଣ୍ଣ ଦୁଇବାର ବ୍ୟବହୃତ ହେଲେ ତାହାକୁ ଦ୍ୱିତୀୟବର୍ଣ୍ଣାଦ୍ୟ ଯମକ କୁହାଯାଏ ।

ଗଗନାଦ ହିଲ୍ଲୋଳ ସୁସୁଖ ଦୃଷ୍ଟିଯାକ ଛୁଛୁ କରୁଛୁ ମନେ ଜନ୍ମ
ମମତା ସଦା ମୋର ନାନାଭଙ୍ଗିମା ତୋର ବନ୍ଧ ମତେ ଦେଖୁଥିବ
ବଦରଧା !
ମୁଁ ମୁଷ୍ଟିବତ ହୋଇଅଛୁ, ଶୁଣ ଶଶୀ ନ୍ୟାସ୍ତ ତ ଅଛୁ
ଶେଷେ ସେବାତ ନାହିଁ ସୁଦୁଃଖ ହେବ କାହିଁ ଧୀ ଧୀର ଏ ଘେନ ନୋହୁଛୁ ॥

୧୩ । ଆଦ୍ୟବର୍ଣ୍ଣଯମକ — ଚରଣର ପ୍ରତିପଦର ଅଦ୍ୟରେ ଦୁଇଟି ସମାନବର୍ଣ୍ଣ ବ୍ୟବହୃତ ହେଲେ ତାହାକୁ ଆଦ୍ୟବର୍ଣ୍ଣ ଯମକ କୁହାଯାଏ ।

ସରଳ ସହୃଦୟେ ସରସତା ହୃଦୟେ ଶରଦେବପ୍ରଲାପପୂଣ ,
ସରଙ୍ଗ ସ୍ୱବୁଦ୍ଧିଷ୍ଟି ଶରକୁ କଲ୍ ଦୃଷ୍ଟି ସରସକୃପା ମିଶାଇଣ
ସରଜାକ୍ଷି !
ସରଞ୍ଜନ ହାସ ପୀୟୂଷ          ସରଜ ସିଦ୍ଧ କଲ୍ ଦାସ
ସର ହଲଟଦାମୀ ସରେଁ ହେବ ହାନ ସରବପର କଲେ ଜାଣ ॥

୧୪ । ଦ୍ୱନ୍ଦ୍ୱାଦ୍ୟଯମ — ଯେ କୌଣସି ଦୁଇଟି ବର୍ଣ୍ଣ ଚରଣର ପଦମାନଙ୍କର ଆଦ୍ୟରେ ଦୁଇବାର ବ୍ୟବହୃତ ହେଲେ ଦ୍ୱନ୍ଦ୍ୱାଦ୍ୟ-ଯମକ ହୁଏ ।

ବରବରନା ଅଳୁ ଦଣେ ଦଣେ ଦଣ୍ଡୁ ମାର ମାରଣା ମାରୁଅଛୁ
ଆଯ ଆଣ ନ ଜାଣ ତୋଷ ତୋ ପଞ୍ଚାଦାଯ ବସ ବଶ ହୋଇ ମାଗୁଛୁ
ଜୀବଜୀବ !
କର କରୁଣା ହଣା ଏବେ;          ଲୋକେ ଲୋକେ ହସିବେ ନେତେବେ
ରସି ରସିକାବର ସ୍ୱପ ସ୍ୱପ ମଧୁର୍ ତାର ତାରକାଶୋଭ ! ଏବେ ।

୧୫ । ଦ୍ୱିରୁକ୍ତଯମକ – ଯେ କୌଣସି ଦୁଇଟି ବର୍ଣ୍ଣ ଚରଣର ପ୍ରଥପର୍ବ ଶେଷରେ ଦୁଇବାର ବ୍ୟବହୃତ ହେଲେ ଦ୍ୱିରୁକ୍ତ ଯମକ ହୁଏ ।

ଦେହର ଗମଗମ ବଦନ ଚମଚମ ବଣଇ ଝଟ ଅନ ଅନ
ଶରୀର ଝମଝମ ହୃଦୟ ଦମଦମ ଢାମ କରୁଛୁ ଘନଘନ
ବାରବାର
ନୟନ ବହଇ ଧାର ଧାର, ଗଣ୍ଡ ହେଲାଣି ଥର ଥର
ରୋମରେ ଗରଜର ଡାକୁଛି ହରହର ଭାଷୁଛି ବନ୍ଧୁ ଧର ଧର ॥

୧୬ । ଅନ୍ତ୍ୟାଦ୍ୟଯମକ – ଏଥିରେ ପ୍ରଥଚରଣରେ ପ୍ରଥପର୍ବରେ ଦୁଇଟି ବର୍ଣ୍ଣ ଦୁଇଥର ବ୍ୟବହୃତ ହୋଇଥାଏ । ପୁନଶ୍ଚ ପ୍ରଥମପର୍ବର ଶେଷ ଦୁଇବର୍ଣ୍ଣ ପରବର୍ତ୍ତୀପର୍ବର ଆଦ୍ୟ ଦୁଇବର୍ଣ୍ଣ ସହିତ ସମାନ ଓ ପର୍ବଗୁଡ଼ିକ ବର୍ଣ୍ଣବିନ୍ୟାସ ଦ୍ୱାରା ପରସ୍ପର ସହିତ ଛନ୍ଦ ହୋଇଥାନ୍ତି ।

ରମଣୀମଣୀ ସାର ସାର ବାର ସଂସାର ସାରଙ୍ଗ ରଙ୍ଗ ବରଧନ
ଧନରେ ନ ରସିବା ଶିବାଣ ବାଣ ଦେବା ଦେବାଦ ବାଦର କ ମାନ
ମାନସାର
ମାଧବ ରସଦା ଦେବାର; ବାର ଭରତରେ ବହର
ହରଷ ରସ ଭାବ ଭାବ ଜନମ ସିବ ଶାବର ବର ସୁଖ ଘର ॥

୧୭ । ସାରଯମକ – ଚରଣର ପ୍ରଥମପର୍ବର ବର୍ଣ୍ଣମାନ ଯେଉଁ ଶୃଙ୍ଖଳାରେ ସନ୍ନିବେଶିତ ଦ୍ୱିତୀୟପର୍ବରେ ମଧ୍ୟ ସେହି ବର୍ଣ୍ଣମାନ ସେହି ଶୃଙ୍ଖଳାରେ ବ୍ୟବହୃତ ହେଲେ ତାହାକୁ ସାରଯମକ କୁହାଯାଏ ।

ନାଗରମଣୀଗଣ ନାଗର ମଣୀ ଗଣନା ନୋହି ଦେଇଣ ପୂଜବେ
ସଦାଶିବ ଗହଣ ସଦା ଶିବ ଗହଣ ଦେଖିଲାକ୍ଷଣୀ ତେଜବେବେ
ଶଣଦୃଶୀ !
ଉରୁବଶୀ ଉରୁ ବସି କ, ଉଲୋତ୍ତମା ଉଲୋତ୍ତମା କ
କଳାକର ସୁନ୍ଦର କଳାକର ସୁନ୍ଦର ପାଇବ ଶ୍ରୀମୁଖ ବିଲୋକ ॥

୧୮ । **ସମପାଦଯମକ** – ଚରଣର ପ୍ରଥମପର୍ବରେ ବର୍ଣ୍ଣମାନ ଯେପରି ଭାବରେ ପ୍ରଯୁକ୍ତ; ସେହି ବର୍ଣ୍ଣମାନ ସେହି ଶୃଙ୍ଖଳାରେ ଶେଷପର୍ବରେ ପ୍ରୟୋଗ କରାଯାଇଥିଲେ ସମପାଦ ଯମକ ହୁଏ ।

ହରି-ଭା-ବରଧନ ସଦା ଇଚ୍ଛଇ ମନ ହେବୁ ହରିଭାବର ଧନ
ବନ୍ଧୁ ଜୀବଜୀବନ ନୋହିଲେ ମୋ ନିଦାନ ମୋର ବନ୍ଧୁ ! ଜୀବ ଜୀବନ
ହା ସୁଦେହା !
ଭାରତୀ ସମ କି ଭାରତୀ; ସୁରଥ ଭୁଲ କି ସୁରଥ
କଙ୍କଣୀ ତବ ରଥ ହେବେ ଦେଖି ମୂରଥ ବନା କି କରି ତବ ରଥ ॥

୧୯ । **ଧ୍ୱନିଯମକ** – ପ୍ରତ୍ୟେକ ଚରଣରେ ଉକ୍ତ ବା ସ୍ୱରବର୍ଣ୍ଣର ଧ୍ୱନି ବ୍ୟତୀତ ଅନ୍ୟ ଧ୍ୱନି ଅନୁଭୂତ ନ ହେଲେ ତାହାକୁ ଧ୍ୱନିଯମକ କୁହାଯାଏ ।

ଦରସ ରସ ରତ ରସର ସର ସତ ସଜି ସଜି ଜୀବ ତୋଷେ
ସାର ସାର ସାରତ ରସାର ଦାର ସାତ ମାନ ମାନ ମାନସ ରସେ
ଜୀବଜୀବ !
ରତ ରତ ରତନସୁତ, ତର ତର ତରୁଣୀ ରୁ ତ
ରହ ତହ ରହସେ ହରହର ହରଷେ ଭାଷି ଭାଷି ଭାସିଲି ମୁଁ ତ ॥

୨୦ । **ଚକ୍ରବାଳ ଯମକ**—ଚରଣର ପ୍ରତ୍ୟେକ ପାଦରେ ଦୁଇଟିବର୍ଣ୍ଣ ବହୁବାର ବ୍ୟବହୃତ ହୋଇଥିଲେ ତାହାକୁ ଚକ୍ରବାଳ ଯମକ କୁହଯାଏ ।

ବାରଣଠେ ସାର ଚରଣ ଫନ୍ଦା ମୋର ଶରଣରକ୍ଷିଣୀ ବୋଲାଅ
ମାରଣ କରେ ମାର କାରଣ ନାହିଁ ମୋର ତାରଣ ଧନ ମୋର ହୁଅ
ମରଣକୁ;
ବରଣ କରିଅଛୁ ମୁହିଁ; ହରଣ କର କୃପା ବନ୍ଧୁ
ଚରଣ ଦମ୍ଭ ପଦ୍ମ ସ୍ମରଣ ମୁଖ ଛବି ସ୍ଫୁରଣ ଆନ ଦଶୁନାହିଁ ॥

———

# ପରିଶୀଳିତ ଗ୍ରନ୍ଥାବଳୀ ଓ ସମାନ୍ତରାଳ ଉଦାହରଣ

| କାବ୍ୟ-କବିତା-କବି | ପଦ | ପୃଷ୍ଠା | ଉଦାହରଣ ସୂଚନା |
|---|---|---|---|
| ଋଗ୍ ବେଦ | ୨୪ | ୭୩ | ଯା ଦମ୍ପତି |
| | ୩୪ | ୧୧୨ | ଅଗ୍ନେ ନକ୍ଷସଂ |
| କଠୋପନିଷଦ | ୨୭ | ୮୪ | ଯୋ ଯଦଚ୍ଛତି |
| ମନୁସ୍ମୃତି | ୨୪ | ୭୩ | ଅନ୍ୟୋନ୍ୟସ୍ୟ |
| ଶ୍ରୀମଦ୍ଭଗବଦ୍‌ଗୀତା | ୭ | ୧୭ | ବୃହତ୍ ସାମ |
| ବାଲ୍ମୀକି ରାମାୟଣ | ୯ | ୨୭ | କୋକିଲାକୁଳ ସୀମାନ୍ତେ |
| | ୧୫ | ୪୭ | ଶିଖିନୀ ମନ୍ମୈଥୁନୈଶ୍ଚ |
| ବାତ୍ସ୍ୟାୟନ କାମସୂତ୍ର | ୨୭ | ୮୭ | କୁର୍ଦ୍ଦେ ନେତ୍ରେ |
| ନାଟ୍ୟଶାସ୍ତ୍ର-ଭରତ | ୧୩ | ୪୨ | ସ୍ୱେଦକର୍ମେ ରଥ |
| | ୧୩ | ୪୨ | ହରଣେ ସଙ୍ଗମେ |
| | ୧୭ | ୪୮ | ଦେବତା ପୂଜନଂ |
| | ୨୭ | ୮୦ | ଆଶ୍ଳେଷ ଚୁମ୍ବନଂ |
| | ୨୬ | ୮୧ | ଅଙ୍ଗେ ସ୍ୱେଦଃ |
| | ୨୭ | ୮୨ | ମୂର୍ଚ୍ଛା ନାମୀଲନଂ |
| | ୨୭ | ୮୭ | କାନ୍ତେ ତଳ୍ପମୁପାଗତେ |
| କାଦମ୍ବରୀ; ପୂର୍ବଭାଗ-ବାଣଭଟ୍ଟ | ୩୧ | ୧୦୦ | ଏବଂ ବିଧସ୍ୟ |
| କାଦମ୍ବରୀ;ଉତ୍ତରଭାଗ-ଭୂଷଣଭଟ୍ଟ | ୨୪ | ୭୧ | ଚନ୍ଦ୍ରୋଦୟେ |
| କିରାତାର୍ଜ୍ଜୁନୀୟ-ଭାରବି | ୧୮ | ୬୩ | ବିପାଣ୍ଡୁଭିଃ |
| | ୨୭ | ୮୧ | ବିପକ୍ଷଚନ୍ଦ୍ରେ |
| ଶିଶୁପାଳବଧ – ମାଘ | ୨୪ | ୭୨ | କୃତଧବଳିମ |
| | ୨୪ | ୭୪ | ପତି ଚ ଯୋଷିତ୍ |
| ନୈଷଧଚରିତ – ଶ୍ରୀହର୍ଷ | ୨୭ | ୮୨ | ଉପଚରିତ ଚିରଂ |
| | ୩୧ | ୧୦୨ | ଅଧିତକାପି ମୁଖେ |
| | ୩୧ | ୧୦୨ | ରତିପତି ପ୍ରହିତା |
| ରଘୁବଂଶ – କାଳିଦାସ | ୨୮ | ୯୧ | ନିଦ୍ରାପ୍ରବନ୍ଧାଦସି |
| ମେଘଦୂତ-କାଳିଦାସ | ୨ | ୩ | ଗଚ୍ଛନ୍ତୀନାଂ |
| | ୧୦ | ୩୩ | ମେଘାଲୋକେ |
| | ୧୭ | ୪୮ | ଆଲୋକେ ତେ |

| କାବ୍ୟ-କବିତା-କବି | ପଦ | ପୃଷ୍ଠା | ଉଦାହରଣ ସୂଚନା |
|---|---|---|---|
| ପୁଷ୍ପବାଣବିଳାସ—କାଳିଦାସ | ୨୭ | ୧୩ | କାନ୍ତୋ ଯାସ୍ୟତି |
| | ୧୪ | ୪୪ | ନବକିସଳୟତଳ୍ପଂ |
| | ୨୪ | ୭୦ | ଅଧିବସତି ବସନ୍ତେ |
| ଶୃଙ୍ଗାରରସାଷ୍ଟକ—କାଳିଦାସ | ୨୩ | ୬୬ | କଦା କାନ୍ତାଗାରେ |
| | ୨୭ | ୮୭ | ଅବିଦିତ ସୁଖଦୁଃଖଂ |
| ଦ୍ୱାତ୍ରିଂଶତ୍ ପୁତ୍ତଳିକା-କାଳିଦାସ | ୩ | ୫ | ହୃଦସ୍ଥକୁଞ୍ଜକୁଟୀରେ |
| | ୮ | ୨୫ | କମଳମୁକୁଳମୃଦ୍ୱୀ |
| ମୃଚ୍ଛକଟିକ—ଶୂଦ୍ରକ | ୧୦ | ୩୪ | ଗର୍ଜନ୍ତି ଶୈଳଶିଖରେଷୁ |
| ମହାନାଟକ—ହନୁମତ୍ କବି | ୬ | ୧୭ | ତତୋ ମନ୍ଦାନିଳୋଦ୍ଧୂତ |
| | ୧୫ | ୪୭ | ବାୟୁର୍ଦକ୍ଷିଣତଃ |
| ଦଶକୁମାର ଚରିତ—ଦଣ୍ଡୀ | ୩୩ | ୧୦୯ | ସର୍ବପଦ୍ମପ୍ରଭାସାର |
| ଚାରୁଦତ୍ତ—ଭାସ | ୧୭ | ୫୨ | ସୁଖଂ ହି |
| ଭଟ୍ଟିକାବ୍ୟ | ୪ | ୮ | ଧାରସ୍ପୈଃ |
| | ୨୭ | ୮୧ | ଷଟ୍ପୈରଂସଚେଦିତ |
| | ୨୮ | ୮୮ | ହରିଣ୍ୟସ୍ତ୍ରୀଧାଳଲ୍ଲେଭେ |
| ଉତ୍ତରରାମଚରିତ—ଭବଭୂତି | ୨୪ | ୬୪ | ଦଳତି ହୃଦୟଂ |
| | ୨୪ | ୭୪ | ହା ହା ଦେବି ! |
| ରତିମଞ୍ଜରୀ—ଜୟଦେବ | ୨୭ | ୮୬ | ନେତ୍ରେ କର୍ଣ୍ଣେ |
| ଛନ୍ଦୋମଞ୍ଜରୀ—ଗଙ୍ଗା ଦାସ | ୩୦ | ୯୧ | ବିଚ୍ଛେଦେ ତେ |
| ରସାର୍ଣ୍ଣବ | ୨ | ୩ | ମଦନାନଳସନ୍ତପ୍ତା |
| ରସାର୍ଣ୍ଣବ ସୁଧାକର | ୨୧ | ୫୮ | ପ୍ରବାସକବପାତ୍ କାନ୍ତେ |
| ବିଦଗ୍ଧମାଧବ—ରୂପଗୋସ୍ୱାମୀ | ୨ | ୩ | ତିମିର ସମିତିଃ |
| ଉଦ୍ଧବ ସନ୍ଦେଶ—ରୂପଗୋସ୍ୱାମୀ | ୩ | ୭ | ଶୀର୍ଣ୍ଣା ଗୋକୁଳମଣ୍ଡଳୀ |
| | ୨୪ | ୬୦ | କାମଂ ଦୂରେ |
| ଉଜ୍ଜ୍ୱଳନୀଳମଣି-ରୂପଗୋସ୍ୱାମୀ | ୨ | ୩ | ଯାଭିଯାରସ୍ଥଳେ |
| | ୨ | ୩ | ଇନ୍ଦୁଚ୍ଛଦ୍ମଲମଣ୍ଡଳଃ |
| | ୧୧ | ୪୦ | ଭ୍ରମତି ଭବନଗର୍ଭେ |
| | ୨୧ | ୫୮ | ରତିକ୍ରୀଡାକୁଞ୍ଜଂ |

ପାଣ୍ଡୁର ଦଶନ ଗଣ୍ଡ ଗଳିତ ବାଷ୍ପଧାରର ଯୋଗେ
ଚଣ୍ଡ ମଦନ ଦଣ୍ଡ ହରଣନେହା ସତତ ବେଗେ ॥
(ହଂସଦୂତ – ଦରଧୀନବ)

ନିଶ୍ଚୟେ ସଜନୀ ପଲାଶ ପଲାଶ ପଲାଶ ପଲାଶ କରିବ
ନିରଞ୍ଜନା ରଞ୍ଜନା ରଞ୍ଜନା ରାତି ବରଷ ସମାନ ଗଣିବ
କୋକିଳ, ନୀରଦକାଳେ କି କରିବ
ନୀରତେ କଣ୍ଟକ କଣ୍ଟକ କଣ୍ଟକ-ନେତ୍ରାର ଜାତ ହୋଇଥିବ ॥୧୦॥

ଅନ୍ୱୟ – ରେ କୋକିଳ, ମୋ ସଜନୀ ନିଶ୍ଚୟ ପଲାଶ (ପତ୍ର) ପଲାଶ (ଫୁଲକଢ଼ି) ପଲାଶ (ପଲ୍+ଅ+ଅଶ୍+ଧାତୁ=ଗମନ କରିବା ଅର୍ଥାତ୍ ବ୍ୟାପିବା) ପଲାଶ (ନିର୍ଦ୍ଦୟ) ହେବ । ସେ ନିରଞ୍ଜନା (ପବିତ୍ରା) ରଞ୍ଜନା (ରଞ୍ଜନକାରିଣୀ) ଓ ରଞ୍ଜନା (ଯୁବା) ରାତିକୁ ବର୍ଷ ପରି ମନେ କରିବ । ସେ ନୀରଦ (ମେଘ) କାଳରେ କ'ଣ କରିବ । ନୀରତେ (ସବୁବେଳେ) କଣ୍ଟକ (ମୀନ) ନେତ୍ରାର କଣ୍ଟକ (ମୁନ) କଣ୍ଟକ (ରୋମହର୍ଷଣ) ହେଉଥିବ ।

ଅର୍ଥ—ରେ କୋକିଳ, ମୋ ସଜନୀ ରାଧା ପତ୍ରସଂଲଗ୍ନ ଫୁଲକଢ଼ିମାନ ଫୁଟିବାର ଦେଖିଲେ (ପ୍ରେମର ସୂଚନା) ମୋର ବିରହ ଯୋଗୁଁ ଅଭିମାନ କରି ଶେଷରେ ମୋ ପ୍ରତି ନିର୍ଦ୍ଦୟ ହେବ । ସେ ପୂତମନା, ସ୍ୱର୍ଣ୍ଣାଙ୍ଗୀ ଓ ମନରଞ୍ଜନକାରିଣୀ ମୋ ବିରହରେ ଗୋଟିଏ ରାତିକୁ ବର୍ଷ ସମାନ ମନେ କରିବ । ସେ ବର୍ତ୍ତମାନ ଏ ମେଘସମୟରେ କ'ଣ କରିବ । ସବୁବେଳେ ଯେ ମୀନନୟନାର ରୋମହର୍ଷଣ ହୋଇ ତାର ଦେହରେ (କନ୍ଦର୍ପର) ମୁନ ଫୁଟିଲା ପରି ଦେଖାଯାଉଥିବ ।

ବିରହରେ ରାତିର ଦୀର୍ଘତା: —

ଚନ୍ଦ୍ରଶ୍ଚଣ୍ଡକରାୟତେ ମୃଦୁଗତି ବାତୋଽପି ବଜ୍ରାୟତେ
ମାଲ୍ୟଂ ସୂଚିକୁଲାୟତେ ମଲୟଜାଲେପଃ ସ୍ଫୁଲିଙ୍ଗାୟତେ ।

ଯଦି କଳ୍ପଶତାୟତେ ବିଧିବଶାତ୍ ପ୍ରାଣୋଽପି ସଂଶୟ୍ୟତେ
ହା ହନ୍ତ ପ୍ରମଦାବିୟୋଗସମୟଃ ସଂହାରକଳ୍ପାୟତେ ।
(ସୁଭାଷିତରତ୍ନଭାଣ୍ଡାଗାର)

ଯତ୍ର କାଳମୃଗୋପମା ମଳୟଜୋ ଗନ୍ଧାନିଳଃ କିଂ ବିଷଂ
ସୋମଃ ସୂର୍ଯ୍ୟ ଇବାଭବନ୍ମଳୟକାଲେପଃ ସ୍ଫୁଲିଙ୍ଗୋପମଃ ।
ଉକ୍ତଃ ପୂତ୍କରବାଦ୍ୟଗୀତପରଭୃତ୍ ପାରାବତାଦିଧ୍ୱନିଃ
ବଜ୍ରସ୍ୟାହତରେବ କର୍ଣ୍ଣଯୁଗଳେ ବିଚ୍ଛେଦକୋ ମେ ଭବ ॥
(ଚୌର ପଞ୍ଚାଶିକା – ବିଲ୍ହଣ)

ତୋହର ବିନୁ ବାଳା        ରଜନୀ ଯୁଗ ପର
ଅନଳ ପ୍ରକାର ଚନ୍ଦନ
ମଳୟ ସମୀରଣ        ବିଷ ପରାୟେ ଜାଣ
କରୁଛୁ ଅଧିକ ଦହନ
ପ୍ରାଣଧନ !
କୋକିଳ ଗୀତବାଦ୍ୟ ସ୍ୱନ
ହୋଏ ବିଚ୍ଛେଦୁଁ ତୋର        କର୍ଣ୍ଣଯୁଗଳେ ମୋର
ଅଶନିପତନ ସମାନ ॥
(ଇଚ୍ଛାବତୀ – ଧନଞ୍ଜୟ ଭଞ୍ଜ)

କାନ୍ତ ବିନା ଏବା ରଜନୀ ସଜନ !
କୋଟି ଯୁଗ ସମ ହେଲାଟି ରେ ॥
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ବର୍ଷାକାଳରେ ବିରହୀ – ବିରହିଣୀଙ୍କର ଚିନ୍ତା:—
ମେଘାଲୋକେ ଭବତି ସୁଖିନୋଽପ୍ୟନ୍ୟଥାବୃତ୍ତି ଚେତଃ
କଣ୍ଠାଶ୍ଳେଷପ୍ରଣୟିନିଜନେ କିଂ ପୁନର୍ଦୂରସଂସ୍ଥେ ॥
(ମେଘଦୂତ – କାଳିଦାସ)

କ୍ଷିପ୍ରଂ ପ୍ରସାଦସ୍ୱତ ସମ୍ପ୍ରତି କୋଽପି ତାନି
କାନ୍ତାମୁଖାନି ରତିବିଗ୍ରହକୋପିତାନି

ଉତ୍କଣ୍ଠୟନ୍ତି ପଥିକାନ୍ ଜଳଦାଃ ସ୍ୱନନ୍ତଃ
ଶୋକଃ ସମୁଦ୍ଭବତି ତଦ୍‌ବନିତାସ୍ୱନନ୍ତଃ ।।
(ଯମକକାବ୍ୟ—ଘଟକର୍ପର)

ଦୈବାଦହମଦ୍ୟ ତୟା ଚପଲାୟତନେତ୍ରୟା ବିୟୁକ୍ତଶ୍ଚ
ଅବିରଳବିଲୋଲଜଳଦକାଲଃ ସମୁପାଗତଶ୍ଚାୟମ୍ ।।
(କାବ୍ୟପ୍ରକାଶ—ମମ୍ମଟ ଭଟ୍ଟ)

ଅୟଂ କାଳଃ କାଳପ୍ରମଥନଗଳାଭୈରଭିନବୈ—
ରହଂ ଯୂନାଯୂନାମପହରତି ଧୈର୍ଯ୍ୟଂ ଜଳଧରୈଃ ।
ସୁରଧାରା ଧାରାପରିଚିତକଡ଼ା ବାନ୍ତି ସହସା
ନଭସ୍ୱନ୍ତଃ ସ୍ୱନ୍ତଃ କଥମିବ ବିୟୋଗଃ ପରିଣମେତ୍ ।।
(ଚମ୍ପୂରାମାୟଣ—ଭୋଜରାଜ)

ଗର୍ଜନ୍ତି ଶୈଳଶିଖରେଷୁ ବିଲମ୍ବି ଲମ୍ବା
ମେଘା ବିୟୁକ୍ତବନିତାହୃଦୟାନୁକାରାଃ ।
ଯେଷାଂ ରବେଣ ସହସୋତ୍ପତିତୈର୍ମୟୂରୈଃ
ଖଂ ବୀକ୍ଷ୍ୟତେ ମଣିମୟୈରିବ ତାଳବୃନ୍ତୈଃ ।।
(ମୃଚ୍ଛକଟିକ — ଶୂଦ୍ରକ)

ନିରବାପୟଦମ୍ବୁଦଃ ସମନ୍ତାତ୍
ପରିତାପଂ ଜଗତୋ ନିଦାଘଜାତମ୍ ।
ବିଷମୋ ବିରହାନଲପ୍ରତାପୋ
ନବ ଏବାସ୍ୟ ଜନେ ଜନେ ବଭୂଃ ।।
(ଦଶଗ୍ରୀବବଧମହାକାବ୍ୟ — ମାର୍କଣ୍ଡେୟ ମିଶ୍ର)

ହା ହା ମୋର ପ୍ରିୟସଖି ଯେ ବାଳା
ତୁ ମୋ ଅମୂଲ୍ୟକଣ୍ଠରତ୍ନମାଳା
ନୟନେ ଦେଖିବୁ ଏ ଘନ ଲୀଳା
କେସନେ ସହିବୁଟି କାମ ଜ୍ୱାଳା
ସହଜେ ଅବଳା,
ଶିରୀଷ ସଦୃଶ ତନୁ କୋମଳା ।।
(ଅନଙ୍ଗରେଖା — ଧନଞ୍ଜୟ ଭଞ୍ଜ)

ଶେଷଭ ସମ୍ପୂର୍ଣ୍ଣ ସଖି ଆଷାଢ଼ର ଅନ୍ତେ
ଶ୍ରାବଣ ପ୍ରବେଶ ଗୋ ଜଳଦବ୍ରୁ ହୋନ୍ତେ
ବଜୁଳି ଝମକେ ଗୋ ଚମକ ହୃଦେ ହସ୍ତା
କେସନ ବଞ୍ଚିବ ମୋର ପାଶେ ନାହିଁ କାନ୍ତା ॥

ରହସ୍ୟ ମଞ୍ଜରୀ—ଦେବଦୁର୍ଲ୍ଲଭ ଦାସ)

ଦେଖି ନବକାଳିକା ବକାଳିକା ମାଳିକା
ଆଳି କାଳିକା କାନ୍ତ ସ୍ମରଣ ॥

(ଲାବଣ୍ୟବତୀ—ଉପେନ୍ଦ୍ରଭଞ୍ଜ)

ଶ୍ରବଣେ ଘନଘନ    ଗର୍ଜନ ଘନଘନ
ବୃଦ୍ଧି ଲୋତକ ଥନ ଥନ
କହେ ସୁମନ ମନ—    ମୋହ ଜୀବନ ବନ-
ଜାଷୀ ହେବନ ଛନଛନ
ହେ ଜଳଧର !
କେଣ୍ଡୁ ନେବ ଦୁର୍ଦ୍ଦିନ ଦିନ
ସେ ଯେ ମୋର ନିଧନ ଧନ
ହୋଇବ ଥନ ଥନ –    ଭବୁ ଭବନ ବନ
ସେ କି କଷ୍ଟ ସ୍ୱଜନ ଜନ ॥

(ରସିକ ହାରାବଳୀ—ଉପେନ୍ଦ୍ରଭଞ୍ଜ)

କେମନ୍ତେ, ବଞ୍ଚିବ ଜୀବନ ଧନ
ସେ ଦେଶେ ଉଦେ ହେଲେ ନବଘନ
ଗର୍ଜ୍ଜନ ଶୁଣି ଚମକିବ ଗ୍ରୀବ
କାଳ ହେବ ତାକୁ ଅନ୍ଧାର ରାତ୍ର
ସେ ନବୀନ ବାଳୀ
ନୁହଇ କାମ ପଲ୍ଲବ ଭଳି ॥

(ସୁବର୍ଣ୍ଣରେଖା—ଉପେନ୍ଦ୍ରଭଞ୍ଜ)

ନୀରଦ ଗଗନେ ଯୋଡ଼ି    କରୁଥିଲା ଦନେ ବୃଷ୍ଟି
ଝଟ ଝଟ ମାରୁଥିଲା ଝଞ୍ଜୁ

ନୀଳକଣ୍ଠ ଭେକ କୁଳ            ଘନେ କରୁଥିଲେ ଗୋଳ
ତାହାଙ୍କ ବଚନ ଅତି ମନ୍ତ୍ରୁ
ନଳନାକ୍ଷି !
କଣ୍ଟା ହୋଇଥିଲା ଅଙ୍ଗ ତହିଁ
ନୀପ ଗନ୍ଧେ ଗନ୍ଧବାହ ବହି ॥
(ଚଉପଦୀଭୂଷଣ—ଉପେନ୍ଦ୍ରଭଞ୍ଜ)

ଏ ଘୋର ବରଷା କାଳେ ପ୍ରିୟତମା
ରସ ଆଦରରେ ବସିଥିବ
ବନପଥ-ପଥ-ପଥ ପରେ ଦୃଷ୍ଟି
ଦେଇଣ ସନ୍ତାପ କରୁଥିବ ॥
(ସଙ୍ଗୀତ—ଉପେନ୍ଦ୍ରଭଞ୍ଜ)

ଆସି ଘନ କାଳ ହୋଇଲା ରେ
ଘନ କେଶୀ ସଙ୍ଗ ନୋହିଲା ରେ ।
ଚଉଷଠୀ ବନ୍ଧ ଜାଣେ ରମଣୀ
ଚତୁର୍ମାସ୍ୟା ଦେଖି ସଣ ଯିବଣୀ
ଆଲୀ ହୃଦୟରେ ଆତଙ୍କବତୀ
ମାର ଶରେ ତନୁ ଦହିଲା ରେ ॥
(ସଙ୍ଗୀତ – ଉପେନ୍ଦ୍ରଭଞ୍ଜ)

ଆଷାଢ଼ ହୋଇ ଘନ, ବରଷୁ ଅଛୁ ବନ
ଅତି ପ୍ରବଳ ହୋଇ, ବହେ ଝଞ୍ଜା ପବନ
କାଳକଣ୍ଟକ ମାନ, ରଟନ୍ତି ଗତ୍ର ଦନ
କେମନ୍ତେ ପ୍ରାଣବନ୍ଧୁ ମୋର ବଞ୍ଚିବ ଦନ ॥
(ସଙ୍ଗୀତ – ଉପେନ୍ଦ୍ରଭଞ୍ଜ)

କରକାପ୍ରକର ମସ୍ତରେ ପଡ଼ି
କୁଳଶ ଘାତେ ଗିରିଶୃଙ୍ଗ ଝଡ଼ି
ବିୟୋଗୀ ଆଶା ଆଧାର ପାତରେ
ବିନାଶ ଜଳ କେବଳ ସନ୍ଧୁରେ

ବକାଳ ବହାର
ହରେ କି ଜମ୍ବୁଜନ୍ଧଳ ଚାହାର ॥
(ଶଶିରେଖା—ପଦ୍ମନାଭ ଶ୍ରୀଚନ୍ଦନ)

ବରଷାକାଳ ହୋଇଲା ଆସି
ବର ସାରସନେତ୍ରୀ ଯିବ ଭାସି ରେ ।
ବରଷାଇ ନେତ୍ର ଅଶ୍ରୁଧାରକୁ
କରୁଥିବ ତ ବସି ଘରକୁ ॥
(ପଦ୍ମମଣି ପଦ୍ୟାବଳୀ)

ମୀନନୟନା କ୍ଷୀଣ ହେବନ ମୋ ବିନା ସେ ।
ଘନଘନ ସ୍ୱନ ଶୁଣି ଛନଛନ ହେବ ମନ
ମୀନକେତନ ଶରେ ଅପଘନ କମ୍ପନ
ମୁହିଁବ ନୟନରୁ ଅନଥନ କରି ବନ
ଭବନ କାନନ ସମାନ ମଣୁଥିବ ମୋ ଧନ ॥
(ସଙ୍ଗୀତ କଳ୍ପଲତା – କବିସୂର୍ଯ୍ୟ ବଳଦେବ ରଥ)

ଘନାଘନ ନିନଦ ଶୁଣି ହୋଇ ଭବଦ
ତତ୍କ୍ଷଣେ ଜ୍ଞାନଶୂନ୍ୟ ହୋଇ
ଘଡ଼ିକରେ ଚେତନା ପାଇ କୁନ୍ଦରଦନା
ଆଳିଙ୍କି କହୁଥିବ ବୁଝି
ରେ ବଳାହକ !
ଘନକାଳର ସହ୍ଯ ଦାହ
ଘଟ ନ ରଖିପାରେ ଆହ
ଘେନ ମୋ ନିବେଦନା କର ବୃଷ୍ଟି ସର୍ଜନା
ସଖି ! ମୋ ଜୀବ ବେଗେ ଯାଉ
(ବଳାହକ ଚଉତିଶା – ବ୍ରଜରାଜ ସିଂହଦେବ)

ଧୈର୍ଯ୍ୟ ଧରି ରହିବ କିଏ ଏଇ ମେଘୁଆ ସାଗେ
ତୁମେ ଅଛ ଦୂରେ ହାୟରେ ବୃଷ୍ଟି ନ ଦଣେ ଆଗେ ॥
(୧୯୧୮ କବିତା—ଲକ୍ଷ୍ମୀ ନାରାୟଣ ସାହୁ)

ସାଥୀ ତ ନାହିଁ ଆଜ ଏ ଆଷାଢ଼ୀ ପ୍ରାତ
କହିବ କିଏ ବ୍ୟଥିତ ନିଃଶ୍ୱାସେ
ଦରଜ ମୋର ହୃଦୟେ ଉଠି ମରୁ
ବୁଝି ମୁଁ ରହେ ଆଷାଢ଼ ଅକାଶେ ॥
(ଧୂପ – ମାୟାଧର ମାନସିଂହ)

ନାହିଁ ପାଶେ ପ୍ରିୟ ଆଜ ଏ ବାଦଲ ଝଣାଏ
ଦମକାଏ ଘୁଅ ଚପଲା ଚଡ଼କ ସହିତେ ॥
(ଲତିକା — ଅନୁପ ସିଂହଦେବ)

ଏ କାଳେ ସୁରତକଲହକୁପିତା କାନ୍ତା କମଲ ମୁଖେ
ଶାନ୍ତ କରଏ କାନ୍ତ କେ ଅବା ଉଡ଼ରଖି ତାରେ ବୁକେ ।
ଉଦ୍‌ବେଗ ଆଣେ ଗର୍ଜନଶୀଳ ବାରଦ ବରଷା-ଉରେ
ପରବାସୀ-ବାମା ଚକ୍ରା ଅସୀମ ଲଜ୍ଞଣ ସତତ ଝୁରେ ॥
(ଅଞ୍ଜଳି – ଦରଗୀ କହ)

ବରୁ ଯେ ବଦରଙ୍କ ବରସନ ଆୟେ
ଅପନୀ ଅବଧି ଜାନ ନନ୍ଦନନ୍ଦନ ! ଗରଜ ଗଗନ ଘନ ଛୁଏ ॥
(ସୁର ସାଗର – ସୁର ଦାସ)

ଘନ ଘଂମଡ଼ ନଭ ଗରଜତ ଘୋର
ପ୍ରିୟାହୀନ ଡରପତ ମନ ମୋର
(ରାମଚରିତ ମାନସ – ତୁଲସୀ ଦାସ)

ଆଗ ବନୀ ସାବନ କୀ ବରଖା
ଫୁଲ ବନେ ଅଙ୍ଗାରେ
ନାଗୀନ ବନ ଗଇ ରାତ ସୁହାନୀ
ପତ୍ଥର ବନ ଗୟେ ତାରେ ॥
(ବୈଜୁବାବରା ଚଳଚିତ୍ର — ଶକୀଲ ବାଦାୟୁନୀ)

ହେରଯା ଶ୍ୟାମଲ ଘନ ନୀଲ ଗଗନେ
ସଜଲ କାଜଲ-ଆଁଖି ପଡ଼ିଲ ମନେ ॥
(ବର୍ଷାବରଷା – ରବୀନ୍ଦ୍ରନାଥ ଠାକୁର)

ମେଘେର ପରେ ମେଘ ଜମେଛେ
ଆନ୍ଧାର କରେ ଆସେ
ଆମାସ୍କୁ କେନ ବସିସ୍ଏ ରାଖ
ଏକା ଦ୍ୱାରେର ପାଶେ ।
ତୁମି ଯଦି ନା ଦେଖା ଦାଓ
କର ଆମାସ୍କୁ ହେଲା
କେମନ କରେ କାଟେ ଆମାର
ଏମନ ବାଦଲ-ବେଲା ॥
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

ସାବନ କୀ ଘଟାଏଁ ଆଈଁ
ସରଶାର ହୁବାଏଁ ଆଈଁ
ସଖିଏଁ ନେ ମୁରଦେଁ ପାଈଁ
ହମ କସ୍ ସେ ନୈନ୍ ମିଲାଏଁ
ହାସ୍ ! ମର ଜାଏଁ ॥
(ଉର୍ଦ୍ଦୁ କେ ପ୍ରେମଗୀତ – ଅବ୍ଦୁଲ ହମୀଦ)

ବିରହରେ ନାୟିକା ଅଙ୍ଗରେ ରୋମାଞ୍ଚ:—
ବିପୁଲପୁଲକପୃଥୁବେପଥୁଭଙ୍ଗା
ଶ୍ୱସିତନିମୀଳିତବିକସଦନଙ୍ଗା ॥
(ଗୀତଗୋବିନ୍ଦ – ଜୟଦେବ)

କେଉଁକେଣ ରମଣୀ ରମଣୀ ର ମଣି ଏକାନ୍ତେ ଚିନ୍ତୁଥିବ ବସି
କାଣ ଅନଳ ମଣିବ ଘନସାର ଘନସାରଜିତ ସୁକେଶୀ
କୋକିଳ, କେଳିପଢ଼ୁଥିବ ମୋ ସଖି
କାଣକଟାକ୍ଷୀ ମୋ ଜୀମୂତ ଜୀମୂତ ଜୀମୂତ ଦେଖି ହେବ ଦୁଃଖୀ ॥୧୧

ଅନ୍ୱୟ – ରେ କୋକିଳ, କେଉଁମନରେ ମୋ ରମଣୀ (ସୁନ୍ଦରୀ ରମଣୀ (ପ୍ରିୟା)ର (ଅଗ୍ନି) ମନେ କରି ଏକାନ୍ତରେ ବସି ଚିନ୍ତା କରୁଥିବ ।

ସେ ଘନସାର (ଶ୍ରେଷ୍ଠମେଘ) ଜିତ ସୁକେଶୀ ଘନସାର (କର୍ପୂର)କୁ ଟାଣ ଅନଳ ପରି ମଣିବ । ମୋ ଟାଣକଟାକ୍ଷୀ (କଟାକ୍ଷବତୀ) ଜୀମୂତ (ମେଘ) ଜୀମୂତ (ଇନ୍ଦ୍ର) ଓ ଜୀମୂତ (ପର୍ବତ)କୁ ଦେଖି ଦୁଃଖରେ ଟଳିପଡ଼ୁଥିବ ।

ଅର୍ଥ—ରେ କୋକିଳ, କେମନ୍ତରେ ମୋ ସୁନ୍ଦରୀ ପ୍ରିୟା ଜଗତକୁ ଅଗ୍ନି ସମାନ ମନେ କରି ଏକାନ୍ତରେ ବସି ମୋ କଥା ଭାବୁଥିବ । ସେ ଘନକୃଷ୍ଣ କେଶୀ କର୍ପୂରକୁ ମଧ୍ୟ ଅଗ୍ନି ପ୍ରାୟ ମନେ କରୁଥିବ । ମୋ କଟାକ୍ଷ-ବତୀ ରାଧା ମେଘକୁ (କୃଷ୍ଣବର୍ଣ୍ଣ ହେବାରୁ ମୋ କଥା ମନେ ପକାଇ) ଇନ୍ଦ୍ରଙ୍କୁ (ଇନ୍ଦ୍ର ପର୍ବତକୁ ବଜ୍ର ମାରେ ଓ ମୁଁ ତାକୁ ପର୍ବତପ୍ରିୟା ବୋଲି କହେ) ଓ ପର୍ବତକୁ (ଏଠାରେ ଗୋବର୍ଦ୍ଧନ ପର୍ବତ ଏଠାରେ କି ବହୁବାର ମିଳନ ହୋଇଥିବା) ଦେଖି ଦୁଃଖରେ ଭୂମିରେ ଟଳିପଡ଼ୁଥିବ ।

ବିରହିଣୀ ରାଧାର ଭୂମିଶୟନ:—

ଭ୍ରମତି ଭବନଗର୍ଭେ ନିର୍ନିମିତ୍ତଂ ହସନ୍ତୀ
ପ୍ରଥୟତି ତବ ବାର୍ତ୍ତାଂ ଚେତନାଚେତନେଷୁ
ଲୁଠତି ଚ ଭୁବି ରାଧା କମ୍ପିତାଙ୍ଗୀ ମୁରାରେ !
ବିଷମବିରହଖେଦୋଦ୍‌ଗାରବିଭ୍ରାନ୍ତଚିତ୍ତା ॥
(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

ଠିକେଣ ଦେଖିବ ଚଞ୍ଚଳା ଚଞ୍ଚଳା ଚଞ୍ଚଳା ଚଞ୍ଚଳା ଭଜିବ
ଠା ଠିକ ରୋହିତ ରୋହିତ ରୋହିତ ରୋହିତ ତାର ବିନାଶିବ ।
କୋକିଳ, ଠକ ଶମ୍ବରର ଚର୍ଚ୍ଚିବ
ଠିକ କୁଚ ବଳାହକ ବଳାହକ ଦମ୍ଭନାଶନେ ଟାଣୁଥିବ ॥୧୨॥

ଅନ୍ୱୟ—ରେ କୋକିଳ, ମୋ ଚଞ୍ଚଳା (ଲକ୍ଷ୍ମୀ) ଚଞ୍ଚଳା (ଅସ୍ଥିର) ବିଜୁଳୀକୁ ଦେଖି ବିଚଳିତା ହେବ । ଇନ୍ଦ୍ରଧନୁ (ମେଘର ସୂଚନା) ପଦ୍ମରାଗ ଓ କୁଙ୍କୁମ (ପ୍ରୀତିସରକ୍ତାମ) ତାର ଧୈର୍ଯ୍ୟକୁ ନାଶ କରିବେ । ସେ ଠକ ମଦନକୁ ବାଧ୍ୟ ହୋଇ ପୂଜା କରିବ । ତାର ପର୍ବତସମ ଉନ୍ନତ କୁଚ-

ଯୁଗଳକୁ ମେଘର ଦମ୍ଭନାଶ ଲାଗି (ମେଘ ପର୍ବତଙ୍କୁ ଗ୍ରାସ କରେ) ଭଙ୍ଗ ଧଣ୍ଠିବ ।

ବିରହରେ ରାଧାର ବିଚଳିତ ଅବସ୍ଥା:—

ସା ରୋମାଞ୍ଚତି ସୀତ୍କରୋତି ବିଲପତ୍ୟୁତ୍କମ୍ପତେ ତାମ୍ୟତି
ଧ୍ୟାୟତ୍ୟୁଦ୍ଭ୍ରମତି ପ୍ରମୀଳତି ପତତ୍ୟୁଦ୍ୟାତି ମୂର୍ଚ୍ଛତ୍ୟପି ॥
(ଗୀତଗୋବିନ୍ଦ—ଜୟଦେବ)

ବିରହତାପନାଶାର୍ଥେ କନ୍ଦର୍ପଙ୍କୁ ପ୍ରାର୍ଥନା: –

ରେ ରେ କନ୍ଦର୍ପ ଦୁର୍ନିବାର ମଦନଂ ପ୍ରୋତ୍ଫୁଲ୍ଲପଙ୍କେରୁହଂ
ବାଣଂ ସଂହର ସଂହର ତ୍ୟଜ ଧନୁଃ କିଂ ପୌରୁଷଂ ମାଂ ପ୍ରତି ।
କାନ୍ତାସଙ୍ଗବିଯୋଗ-ଦୁଃଖ-ଦହନ-ଜ୍ୱାଲାବଲୀଢ଼ଂ ବପୁଃ
ଶୂରାଣାଂ ମୃତମାରଣେ ନହି ପରୋ ଧର୍ମଃ ପ୍ରଯୁକ୍ତୋ ବୁଧୈଃ ॥
(ସୁଭାଷିତ ରତ୍ନଭାଣ୍ଡାଗାର)

ତମୁରୁ ମଧ୍ୟର ଅଶୋକ ଅଶୋକ ଅଶୋକ ଅଶୋକ ନାଶିବ,
ତାଳମୂଦଣନମଣ୍ଡମ ଅଳୀକ ଅଳୀକ ଅଳୀକ କରିବ,
କୋକିଳ, ତୋଳା ପ୍ରତିମା ଅବଳାକୁ
ଡୋଳାଇଲା ଚଉଷଠକ ଚଉଷଠକ ଚଉଷଠକ ଚମ୍ପା ଶୋଭାକୁ ॥୧୬॥

ଅନ୍ୱୟ – ରେ କୋକିଳ, ମୋ ତମୁରୁମଧ୍ୟର ଅଶୋକ (ଶୋକ-ରହିତ) ଅଶୋକ (ସୁଖ) କୁ ଅଶୋକ (ଅଶୋକ କଢ଼) ଓ ଅଶୋକ (ପାରଦ) ନାଶ କରିବେ । ସେ ତାଳମୂଦଣନଶୋଭା ତାର ଅଳୀକ (ଲଳାଟ) କୁ ଅଳୀକ (ତୁଚ୍ଛ) ଅଳୀକ (ମିଥ୍ୟା) ମନେ କରିବ । ମୋ ତୋଳା ପ୍ରତିମା ଅବଳା ଚମ୍ପାଶୋଭାକୁ ଚଉଷଠକ (ପ୍ରାଙ୍ଗଣ) ଚଉଷଠକ (ପଦ୍ମାବେଦୀ) ଓ ଚଉଷଠକ (ଭ୍ରମର) ଡୋଳାଇଲା ।

ଅର୍ଥ—ରେ କୋକିଳ, ମୋ କ୍ଷୀଣମଧ୍ୟମାର ଶୋକଶୂନ୍ୟ ଓ ସୁଖମୟ ଜୀବନକୁ ଅଶୋକ କଢ଼ (ପ୍ରେମର ପ୍ରତୀକ) ଓ ପାରଦ (ପାରଦଧାରୁ ହଠାତ୍ ଶୂନ୍ୟ ହୋଇଯାଏ, ତେଣୁ ସେ ଜୀବନକୁ ଶୂନ୍ୟ ମନେ କରିବ) ତାକୁ ନାଶ

କରିବେ । ସେ ତାଳମୃଦଙ୍ଗନଶୋଣୀ ତାର କପାଳକୁ ନିତାନ୍ତ କ୍ଷୁଦ୍ର, ମିଥ୍ୟା ଓ ଅପ୍ରିୟ ମନେ କରିବ । ମୋ ଡୋଲାପ୍ରଥମା ଚମ୍ପକବରନାକୁ ଏବେ ତାର ସଖୀମାନେ ପ୍ରାଙ୍ଗଣସ୍ଥିତ ପଦ୍ମକ.ବେଦୀରେ ବସାଇ ଶୁମର କରିବେ ବୋଲି ଯୋଗଥିଲି । (ରାଧାର ମୂର୍ଚ୍ଛିତାବସ୍ଥା)

ବିରହରେ ନାୟିକାର ମୂର୍ଚ୍ଛା:—

ସ୍ୱେଦ କମ୍ପୋଽଥରୋମାଞ୍ଚ ସ୍ୱରଭଙ୍ଗୋଽଥ ବେପଥୁଃ
ବୈବର୍ଣ୍ଣ୍ୟମଶ୍ରୁ ପ୍ରଲୟାବତ୍ୟଷ୍ଟୌ ସାତ୍ତ୍ୱିକା ମତାଃ ॥

(ନାଟ୍ୟଶାସ୍ତ୍ର—ଭରତ

ମରଣେ ସଙ୍ଗମେ ଚୈବ ପ୍ରିୟସ୍ୟାଽଲକନେ ତଥା
ହେତୁତ୍ରୟଂ ସମାସାଦ୍ୟ ସାତ୍ତ୍ୱିକଃ ସପ୍ରବର୍ତ୍ତତେ ॥

(ନାଟ୍ୟଶାସ୍ତ୍ର - ଭରତ)

ମନ ତାର କୁଞ୍ଜବନ ଦହଇ କାମ-ଦହନ
କ୍ଷଣେ କ୍ଷଣେ ଶୂନ୍ୟଙ୍କନ ହୋଇ ସୁକେଶୀ

(ଲୀଳାବତୀ – ରଘୁନାଥ ହରିଚନ୍ଦନ)

ଶଶିଶୋଭାନନ୍ଦୀ ବଦନେ ତାହାର
କଳଙ୍କ-କାଳିମା ସାଜେ
ସକ୍ଷାଳେପ ହେଜି ମୋ ମନ-ବୀଣାରେ
କରୁଣ-ମୂର୍ଚ୍ଛନା ବାଜେ ॥

(ସପ୍ତରଶ୍ମି – ଦରଦୀକବି)

ବିରହିଣୀର ମୂର୍ଚ୍ଛାରେ ସଖୀମାନଙ୍କର ଉପଚାର: —

ତଦା ନିଷ୍ପନ୍ଦାଙ୍ଗୀ କଳିତନଳିନୀପଲ୍ଲବକୁଲୈଃ
ପରିକ୍ଷୀଣାହାନ୍ତ ପ୍ରେମଣାମକୁଶଲମୁତାଶଙ୍କି ହୃଦୟେ ।
ଦୁରମ୍ଭୋ ଗମ୍ଭୀରକୃତ ମିହିରପୁତ୍ରୀଲହରିଭି—
ର୍ବିଲୀନା ଧୂଳୀନ.ମୁପରି ପରିବବ୍ରେ ପରିଜନୈଃ ॥

(ହଂସଦୂତ—ରୂପଗୋସ୍ୱାମୀ)

ମନ୍ଦନନ୍ଦନ ସୁଧା ଅପଘନେ
କମଳପଣେ ଆବର ସଘନେ
ସଜନୀ ଦୁଃଖ ଖଳ,
ବେଢ଼ି ବୈଦଗ୍ଧେ ମୁହୁଁରେ ଯେବେ
ଅଶ୍ରୁ ସକଳ ଆଳ,
ଅର୍କତନୟା କଲ୍ଲୋଳେ ଗଳ ଗୁଳ ॥
(ହଂସଦୂତ—ଦରଧାକଣ୍ଟ)

ତଳଥିବ ନକ କଦମ୍ବ କଦମ୍ବ କଦମ୍ବ କଦମ୍ବ ଶଯ୍ୟାରେ
ତାଳେ ଯେନ ପଦ୍ମ କୋରକ କୋରକ କୋର କର ତାରପ୍ରକାରେ
କୋକଳ, ତାଳେ ନ ଗୃହିଁବ ସେ ଧୀରେ
ତାଳେ ରଖିଥିବ ସୁପର୍ଣ୍ଣ ସୁପର୍ଣ୍ଣ ସୁପର୍ଣ୍ଣ ନ ରଖି ଅଙ୍ଗରେ ॥୧୪॥

ଅନ୍ୱୟ – ରେ କୋକଳ, ସେ କଦମ୍ବ (ବ୍ୟାକୁଳ) କଦମ୍ବ (କଦମ୍ବଫୁଲ) କଦମ୍ବ (ସର୍ଷପ – ଏଠାରେ କେଶର) କଦମ୍ବ (ସମୂହ) ଶଯ୍ୟାରେ ତଳଥିବ । ସେ ତାଳେ (ଟିକିଏ) ହେଲେ ପଦ୍ମକୋରକ (ମୃଣାଳ ଅଂଶ) କୋରକ (ସୁଗନ୍ଧ ବଶେଷ) ଓ କୋର (କଢ଼) କୁ ର (ଅଗ୍ନି) ପ୍ରାପ୍ତ ମନେ କରିବ । ସେ ଆଉ ମୋତେ ତଳେ ହେଲେ ଗୃହିଁବ ନାହିଁ । ସେ ସୁପର୍ଣ୍ଣ (ସ୍ୱର୍ଣ୍ଣଚୂଡ଼ା) ଅଙ୍ଗରେ ନ ରଖି ସୁପର୍ଣ୍ଣ (କୋମଳପତ୍ର) ଓ ସୁପର୍ଣ୍ଣ (ନାଗକେଶର) ରଖିଥିବ ।

ଅର୍ଥ – ରେ କୋକଳ, ସେ ବ୍ୟାକୁଳ ହୋଇ କଦମ୍ବଫୁଲର କେଶରଗୁଡ଼ିକରେ ଶଯ୍ୟା ରଚନା କର ଶୋଇଥିବ । ସେ ଆଉ ମୋତେ ଅଭିମାନ କର ଟିକିଏ ହେଲେ ଗୃହିଁବ ନାହିଁ । ସେ ତାର ଦେହରେ ସ୍ୱର୍ଣ୍ଣ ଆଭରଣମାନ ନ ରଖି କେବଳ ନାଗେଶ୍ୱର ଫୁଲ ଓ କୋମଳ ପତ୍ରଶଯ୍ୟାରେ ଶୋଇଥିବ ।

ବରହିଣୀର ବ୍ୟାକୁଳତା ଓ ନବେଦନ:—

ଶଢ ସମ୍ପଦ ପାଇଁ ଅଧରରୁ ସୁଧା ପିଇ ସେ ଏବେ ପାଳନ୍ତିରୁ ବଷ'
ଶଶୀରଠାରେ ହୃତ ବହୁ ଜଳ ଯେମନ୍ତ ସନ୍ନିପାତରେ କରେ ନାଶ

ହେ ଶ୍ୟାମ ବନ୍ଧୁ !
ଶଶୀ ସ୍ୱଭାବକୁ ନ ଘେନ
ଶୁଭରୁଚିର ନସ ଯେସନ
ଶୀତଳ ସର୍ବକର ହୋଏ ଅନଳ ସର ପ୍ରୀତବିଚ୍ଛେଦୀ ଯେତେ ଜନ ॥
(ବ୍ରଜକୁମ୍ଭ—ଉପେନ୍ଦ୍ର ଭଞ୍ଜ)

ବିରହତାପନାଶାର୍ଥେ ବିରହିଣୀର ପୁଷ୍ପ ଓ କୋମଳପତ୍ର ଶଯ୍ୟା! –

କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟମ୍
ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟମ୍ ॥
(ଗୀତଗୋବିନ୍ଦ – ଜୟଦେବ)

ନବକମଳଦଳାସ୍ତୃତଳ୍ପଂ କଳ୍ପିତଂ ତାପଶାନ୍ତ୍ୟୈ
କରପରିଚିତସଙ୍ଗାତ୍ କେବଳଂ ମ୍ଲାପୟନ୍ତ୍ୟାଃ ।
କୁସୁମଶରକୃଶାନୁପ୍ରାପିତାଙ୍ଗାରତାୟାଃ
ଶିବ ଶିବ ପରତାପଂ କୋ ବଦେତ୍ କୋମଳାଙ୍ଗ୍ୟାଃ ॥
(ପୁଷ୍ପବାଣବିଳାସ—କାଳିଦାସ)

ବିରହିଣୀର ସ୍ୱର୍ଣ୍ଣାଭରଣ ତ୍ୟାଗଃ –

କୁସୁମଶୟନଂ ନ ପ୍ରତ୍ୟଗ୍ରଂ ନ ଚ ଚନ୍ଦ୍ରମରୀଚୟୋ
ନ ଚ ମଳୟଜଂ ସର୍ବାଙ୍ଗୀଣଂ ନ ବା ମଣିୟଷ୍ଟୟଃ ।
ମନସିଜରୁଜଂ ସା ବା ଦିବ୍ୟା ମମାଲମପୋହିତୁଂ
ରହସି ଲଘୟେଦାରବ୍ଧା ବା ତଦାଶ୍ରୟିଣୀ କଥା ।
(ବିକ୍ରମୋର୍ବଶୀୟ – କାଳିଦାସ)

ଏକ କର କୁଚେ ଜଘନ କଦଳୀ କଦଳି କଦଳୀ-ନୟନେ
ଏବେ ମଣୁଥିବ ରମଣୀ ପାବକ ପାବକ ପାବକ ସମାନେ
କୋକିଳ, ଆହା ମୋ ପ୍ରିୟ ରସକଳା
ଅଙ୍ଗନା ସାରଙ୍ଗ ସାରଙ୍ଗ ସାରଙ୍ଗ ବଚନ ଶୁଣି ହେବ ହେଳା ॥୧୬॥

**ଅନ୍ୱୟ** – ରେ କୋକିଳ, ମୋ କଦଳୀ (ମୃଗ) ନୟନା କ (ଶିର) ଦଳ (କୋଡ଼) ତାର ଜଘନ କଦଳୀ (ରମ୍ଭା ଉରୁ) ଓ କୁଚକୁ ଏକ କର

ବସିଥିବ । ଏବେ ଯେ ରମଣୀ ପାବକ (କୁସୁମ) କୁ ପାବକ (ସୂର୍ଯ୍ୟ) ଓ ପାବକ (ଅଗ୍ନି) ସମାନ ମଣୁଥିବ । ମୋ ରସବନ୍ତୀ ଅଙ୍ଗନା (ନାରୀ) ସାରଙ୍ଗ (କୋକିଳ) ସାରଙ୍ଗ (ମୟୂର) ଓ ସାରଙ୍ଗ (ଚାତକ) ର ସ୍ୱନ ଶୁଣି ବ୍ୟାକୁଳ ହେଉଥିବ ।

ଅର୍ଥ—ରେ କୋକିଳ, ମୋ ମୃଗନେତ୍ରୀ ରମଣୀକୁ ସୁଧା ଶିର କୋଡ଼ ତାର କୁଚଯୁଗଳକୁ ଏକାଠି କରି ଅର୍ଥାତ୍ ଦୁଇ ହସ୍ତରେ ବକ୍ଷକୁ ଚୁପି ରଖି ବସିଥିବ । ସେ ରମଣୀ କୁସୁମକୁ ସୂର୍ଯ୍ୟ ଓ ଅଗ୍ନି ପରି ମନେ କରୁଥିବ । ମୋ ରସବନ୍ତୀ ସୁଧା କୋକିଳ, ମୟୂର ଓ ଚାତକର ସ୍ୱନ ଶୁଣି ବିହ୍ୱଳା ହେଉଥିବ ।

ସାରଙ୍ଗ ଶବ୍ଦର ଅନ୍ୟତ୍ର ପ୍ରୟୋଗ:—

ସାରଙ୍ଗରଦ ପଲଙ୍କେ ସାରଙ୍ଗ ପଙ୍କିଲ ପଙ୍କେ
ସାରଙ୍ଗମୁଖୀ ସାରଙ୍ଗ ସାରଙ୍ଗରେ ମାଡିଲେ ॥
(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ସାରଙ୍ଗଦନ୍ତ ପଲଙ୍କେ ସାରଙ୍ଗେ ପେଷି ନିଃଶଙ୍କେ
ଶାରଙ୍ଗମୁଖୀ ସାରଙ୍ଗ କେଳି ସୁଲେଲେ
ସାରଙ୍ଗନାଳ ବାହୁରେ କାନ୍ତ ଭିଡ଼ି ସାରଙ୍ଗରେ
ସାରଙ୍ଗ ଉପରୁ ଶୀଘ୍ର ଟୋଳି ଯେ ନେଲେ
ସାର ପ୍ରେମେ ସାରଙ୍ଗରଣ
ସହଜେ ଭଜିଲେ ଶାନ୍ତ ଯୁଗଳ ପ୍ରାଣ ॥
(କମଳାକାନ୍ତ ଚଉତିଶା—ଦୀନକୃଷ୍ଣ)

ସାରଙ୍ଗ ନୟନ ବୟନ ସ୍ୱଜ ସାରଙ୍ଗ
ସାରଙ୍ଗ ତନୁ ସମ ଧାନେ
ସାରଙ୍ଗ ଉପରେ ଉଳଗ ଦସ ସାରଙ୍ଗ
କାନ୍ତି କରଥ ମଧୁପାନେ ॥
(ବିଦ୍ୟାପତି ରଚନାବଳୀ)

ପକ୍ଷିସ୍ୱନ ଶ୍ରବଣରେ ବରଷା-ବରଦ୍ଧଣୀର କାମତାପ ବୃଦ୍ଧି!—

ଶିଖିନା ମନ୍ମଥାର୍ତ୍ତେଷା ଭର୍ତ୍ତାରଂ ଶିଖପାନୁଷୁ
ତାମେବ ମନସା ରମାଂ ମୟୂରେସ୍ୱପଧାବତ ॥
(ବାଲ୍ମୀକ ରାମାୟଣ)

ବାମୁର୍ଦ୍ଦକ୍ଷିଣତଃ ଶିଖୀ ଚ ପୁରତୋ ଭୃଙ୍ଗଧ୍ୱନିର୍ବାମତଃ
ପଶ୍ଚାଦ୍ ସହଚରବାକରୁଦତଂ ଶ୍ରେଷ୍ଠଂ ସୁଧାଧାଧ୍ୟତ ।
ଇତ୍ଥଂ ଦୁଃସହପଞ୍ଚତାପସହତେ ମଧ୍ୟେ ମୟା ଧ୍ୟାୟତା
ନେଷାନ୍ତେ କଲତପ୍ରକୀଗରଭରୈରତ୍ୟନ୍ତଦୀର୍ଘାନଣାଃ ॥
(ମହାନାଟକ— ହନୁମନ୍ତ କବି)

ବସ୍ତ୍ରଦୁପଚତମେଘଂ ଭୂମୟଃ କନ୍ଦଲନ୍ୟୋ
ନବକୁଟଜକଦମ୍ବାମୋଦନୀ ଗନ୍ଧବାହାଃ
ଶିଖିକୁଲକଲକେକାରାବରମ୍ୟା ବନାନ୍ତା
ସୁଖିନମସୁଖିନଂ ବା ସର୍ବମୁତ୍କଣ୍ଠୟନ୍ତି ॥
(ଶୃଙ୍ଗାରଶତକ – ଭର୍ତ୍ତୃହରି)

ନୀଲାମ୍ଭୋଧରସାନ୍ଦ୍ରତାଂ ଦଶିଦଶି ପ୍ରାବୃଣ୍ମେ ସାନ୍ଦ୍ରବ
ସୌଦାମିନ୍ୟ ଇମା ସ୍ଫୁରନ୍ତି ପଶତଃ କୂଜନ୍ତ୍ୟମୀ ବର୍ହିଣଃ ।
ବର୍ଷନ୍ତି ଃ ସମୁପାଗତଃ ପ୍ରିୟତମେ ପୁଷ୍ପାମ୍ବୁଧୋଦୀପକଃ
କାଳେଽସ୍ମିନ୍ ରସିକଂ ସମୀକ୍ଷ୍ୟ ମଧୁରଂ ମେ ଦେହି ଦାନଂ ତନୋଃ ॥
(ରସିକାଷ୍ଟକକାବ୍ୟ— ନାରାୟଣ ଭଟ୍ଟ)

ପିକଶିଖିକଲହଂସପ୍ରାୟପକ୍ଷିବ୍ରଜାନାଂ
ସ୍ୱରଶତମନୁକରୋତ୍ୟଙ୍ଗନା ମନ୍ମଥାର୍ତ୍ତା ॥
(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

ନାଚେ ବରଷା ରହି   ନଗ୍ରେ ଭେକହିଁ କହି
କାମୀ ପ୍ରଳୟ ବହି ବହି
ଶୁଣି ନ ସହି ସହି   ତରବ ମଣି ମହିଳାକୁ
ଯେ ଯାଇ ନାହିଁ ନାହିଁ
ହେ ଜଳଧର !

କଦମ୍ବ ଗନ୍ଧ ବନ୍ଧୁ ବନ୍ଧୁ
ବାଉ ଥିବ ମୋଦ ହି ଦନ୍ଧ
ମୋ ପଥ ଗୃହି ଗୃହି ଥିବ ସୃନ୍ଦରୀ ମନ୍ଦୀ
ପାପୀ ଦନ୍ଦେ ଅଦେଖି ଦେଖି ॥
(ରସିକ ହାରାବଳୀ – ଉପେନ୍ଦ୍ର ଭଞ୍ଜ)

ଘନେ ଘନସାର ସାର ଭଗ ପାନ ତାର ତାର-
ବରମୁଖୀ ଦେଖି ବାର ବାର
ଡାକନ୍ତେ ମୟୂର ଉର ଉଲ୍ଲସି ଦର୍ଦ୍ଦୁର ଦୂର
ଚେତା କଲ୍ପ ହୋଇ ଥର ଥର
ହେ ଜଳଧର !
ଯାଚନ୍ତ ସେ ହୋଇ ତର ତର
ମୋତେ ରୁଚ୍ଛା କର କର – ଖେଦରୁ ମୁଁ ନଖର ଖର
ଛିପୁଁ ନେତ୍ର ଲଜେ ଜର ଜର ॥
(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଘନାବୃତ ବ୍ୟୋମ ନୂତନ ଅଙ୍କୁର ଶାଦ୍ଵଳାଭ ମହୀ ପ୍ରଦେଶ
ନବ ଗଣ ମଲ୍ଲୀ କଦମ୍ବ କଦମ୍ବବାସଗର୍ଭିତ ପୁଷ୍ପଦେଶ
ମୟୂର-କେକା ନିଃସ୍ୱନ ମୁଖରିତ
ବନାନ୍ତ କ ସୁଖୀ କ ଦୁଃଖୀ ସକଳ ଜନଙ୍କୁ କରେ ଉତ୍କଣ୍ଠିତ ॥
(ଉଦ୍ଭିଦ୍ଦର ସୁଷ୍ଠୁଷେଡ—ରାଧାମୋହନ ରାଜେନ୍ଦ୍ରଦେବ)

ତା ନେତ୍ର କରିବ ସାରଙ୍ଗ ସାରଙ୍ଗ ଶାରଙ୍ଗ ଧରସୁନୁ ବାଣ
ତରୁଣୀ ନ ଖେନ ଅଶନ ଅମୃତ ଅମୃତ ଅମୃତ କରଣ
କୋକିଳ, ଭୃଙ୍ଗସ୍ଵନା କେହ୍ନେ ବଞ୍ଚିବ
ତାର ରୁନ୍ଧ ହେଲେ ଶ୍ରୀକଣ୍ଠ ଶ୍ରୀକଣ୍ଠ ଶ୍ରୀକଣ୍ଠ-ଭୂଷଣ ଚନ୍ଦ୍ରିବ ॥୧୭॥

ଅନ୍ୱୟ—ରେ କୋକିଳ, ତାର ସାରଙ୍ଗ (ସୁକାନ୍ତ) ନେତ୍ରକୁ ଶାରଙ୍ଗଧର (ବିଷ୍ଣୁ) ସୁନୁ (ପୁତ୍ର) ସାରଙ୍ଗ (ବଧ୍ୟ) କରିବ । ଯେ ତରୁଣୀ

ଅମୃତ (କ୍ଷୀର) ଅମୃତ (ଲବଣୀ) ଓ ଅମୃତ (ଅନ୍ନ) ଅଶନ (ଭୋଜନ) କରିବ ନାହିଁ । ସେ ଭୃଙ୍ଗସ୍ତନୀ (ଉନ୍ନତପୟୋଧରା) କପରି ବଞ୍ଚିବ । ତାର ଶ୍ରୀକଣ୍ଠ (ଶୋଭାଯୁକ୍ତ କଣ୍ଠ) ରୁଦ୍ଧ ହେଲେ ସେ ଶ୍ରୀକଣ୍ଠ (ଶିବ) ଓ ଶ୍ରୀକଣ୍ଠ-ଭୂଷଣ (ଲକ୍ଷ୍ମୀଙ୍କର କଣ୍ଠଭୂଷଣ – ବିଷ୍ଣୁ) ଙ୍କୁ ଧ୍ୟାନ କରିବ ।

ଅର୍ଥ—ରେ କୋକିଳ, ତାର କାନ୍ତିଯୁକ୍ତ ନେତ୍ରକୁ କନ୍ଦର୍ପ ନାଶ କରିବ ଅର୍ଥାତ ହତଶ୍ରୀ କରିବ । ସେ ତରୁଣୀ ଦୁଃଖରେ କ୍ଷୀର, ଲବଣୀ ଓ ଅନ୍ନ ଗ୍ରହଣ କରିବ ନାହିଁ । ସେ ପୀନପୟୋଧରା କପରି ବଞ୍ଚିବ । ତାର ଶୋଭାଯୁକ୍ତ କଣ୍ଠ ରୁଦ୍ଧ ହେଲେ ସେ ଶିବ ଓ ବିଷ୍ଣୁଙ୍କୁ ସ୍ମରଣ କରିବ ।

ବିରହିଣୀର ଶିବ ଓ ବିଷ୍ଣୁଙ୍କୁ ଆରାଧନା: –

ଦେବତା ପୂଜନଂ କୁର୍ଯାଦଦ୍ୟାତ୍ତୁ ବଲିଶ୍ଚ ବଲିମ୍
ଲିଖେତ୍ତୁକାନ୍ତପ୍ରତିକୃତିଂ ପାଠୟେଚ୍ଛୁକସାରିକାଃ ।
ଗଣୟେଚ୍ଚାବଧିଦିନଂ ଗୀତଂ ଗାୟେତ୍ତଦଙ୍କିତମ୍
ଏବ ବିଧବିନୋଦେନ ନୟେତ୍କାଲଂ ବିୟୋଗିନୀ ॥
(ନାଟ୍ୟଶାସ୍ତ୍ର – ଭରତ)

ଭରତଙ୍କ ନାଟ୍ୟଶାସ୍ତ୍ର ଭିତ୍ତିରେ କାଳିଦାସଙ୍କର ବିରହିଣୀ କାର୍ଯ୍ୟ ବର୍ଣ୍ଣନା: –

ଆଲୋକେ ତେ ନିପତତି ପୁରା ସା ବଲିବ୍ୟାକୁଲା ବା
ମତ୍ସାଦୃଶ୍ୟଂ ବିରହତନୁ ବା ଭାବଗମ୍ୟଂ ଲିଖନ୍ତୀ ।
ପୃଚ୍ଛନ୍ତୀ ବା ମଧୁରବଚନଂ ସାରିକାଂ ପଞ୍ଜରସ୍ଥାଂ
କଚ୍ଚିଦ୍‌ଭର୍ତ୍ତୁଃ ସ୍ମରସି ରସିକେ ! ତ୍ୱଂହି ତସ୍ୟ ପ୍ରିୟେତି ॥
(ମେଘଦୂତ – କାଳିଦାସ)

ମୁହୁଃ ଶୂନ୍ୟାଂ ଦୃଷ୍ଟିଂ ବହସି ରହସି ଧ୍ୟାୟସି ସଦା
ଶୃଣୋଷି ପ୍ରତ୍ୟଙ୍କଂ ନବପରିଜନଜ୍ଞାପନଶତଂ ।
ତତଃ ଶଙ୍କେ ପଙ୍କେରୁହଦଲମୁଖୀ ଶ୍ୟାମଲରୁଚୋ
ସ ଯୂନାମୂର୍ଦ୍ଧଂସସ୍ତବନସ୍ତନବୀଥୀପଥିକତାମ୍ ॥
(ହଂସଦୂତ—ରୂପଗୋସ୍ୱାମୀ)

ବାଗ୍ଭେ ମାଙ୍ଗଲିକାଃ ପ୍ରସ୍ଥାଣେସମୟେ ଜଲ୍ପନ୍ତ୍ୟନଲ୍ପଂ ଜନେ
କେଳିମନ୍ଦିରମାରୁତାୟନମୁଖେ ବିନ୍ୟସ୍ତବକ୍ତ୍ରାମ୍ବୁଜା ।
ନିଃଶ୍ୱାସଗ୍ଲପିତାଧରୋପରିପତଦ୍‌ବାଷ୍ପାର୍ଦ୍ରବକ୍ଷୋରୁହା
ବାଲାଲୋଲବିଲୋଚନା ଶିବ ଶିବ ପ୍ରାଣେଶ ଆଲୋକତେ ॥

(ରସଗଙ୍ଗାଧର—ପଣ୍ଡିତରାଜ ଜଗନ୍ନାଥ)

ବାରେ ବାରେ ଶିବ ଶିବ ସେ ଘୋଷେ
ବାରେ ବାରେ ବ୍ରତମାନ ମନାସେ
ବାରେ ବାରେ ନାହିଁ ମୂର୍ଚ୍ଛାରେ ପଶୀ
ବାରେ ବାରେ ଭସ୍ମ ସଣ୍ଡ୍ରସ୍ତ ରଖି
ବନବୃନ୍ଦ ନାଡ଼
ବନଜାକ୍ଷୀ ଦେଖି ଚନ୍ଦ୍ରେ ଗରୁଡ଼ ॥

(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ପୁଷ୍ପ ପବ ପ୍ରଭାପ୍ରଭ ଭ୍ରମୂ ସବେ ଭୃଙ୍ଗ
ଶ୍ରୀମ ବାଷ୍ପ ଭବ ଭବେ ଭବ ଗାବ ଗାବ
ଭବ-ପ୍ରଭବୀ ଭୂମିପ ପ୍ରଭାବ ବଢ଼ବେ
ବସେ ! ପ୍ରଭୋ ! ଶ୍ରୀମ ଭ୍ରମେ ଭ୍ରମି ଭ୍ରମି ଭାବେ ॥

(ପ୍ରେମସୁଧାନିଧି — ଉପେନ୍ଦ୍ରଭଞ୍ଜ)

ସତେ କି କଣବେ ହର-ଗହଣ
ପ୍ରବାସୁ ମୋ କାନ୍ତ ଆସିବେ ଫେରି
କଣବେ ଅଙ୍କ ପଲଙ୍କେ ଶୟନ
ସତେ କି ମୋ ଦୁଃଖ ହେବ ଦହନ
କଣ ରସକେଳି
ଭଣେ ଉପଇନ୍ଦ୍ର ଏ ରସେ ଭାଳି ॥

(ସଙ୍ଗୀତ ଉପେନ୍ଦ୍ର ଭଞ୍ଜ)

ବରବରନା ମୋ ବରଷାଇ ବାଣ ବରଷକର ଏ ଦନେ
ବର ମାସ୍ଥବ ବରଦେବ ପଦେ ବରଜ ସୁଧା ଲୋଜନ

ବରଥବ କ ପ୍ରାଣେ
ବରବୂଳ-ଉରଜା ମୋ ବନେ ॥
(ବରହବାଦ୍ଧବୀ—ଦରଘାକବ)

ବୃନ୍ଦାବଣ୍ଡ ପାଶେ ଓଳଗି ହୋଇଣ
ଜଣାଇଲେ ନିଜ ଦୁଃଖ
ବରହଣୀ ବାମା ନବେଦଲ୍କ ତହିଁ
ପଡର ମିଳନସୁଖ ॥
(ପକ୍ଷୀପ୍ରୀତ—ଦରଘାକବ)

କୃଷ୍ଣ ଚଣତ ଭଲ ଏକାନ୍ତେ ଚନ୍ତତ ମନେ ରାଧା,
ଉନ୍ଦେ 'ଆପିଲ ଦୃଷ୍ଟି ତାହାର ଲଭିଣ ବରହ-ବାଧା,
କର୍ଣ୍ଣେ ତାହାର ଶୁଣାଅ ହେ ମଧୁବାର୍ତ୍ତା,
ବରହ-ବହ୍ନି ତାପେ ସେ ଦଗ୍‌ଧା ଆର୍ତ୍ତା,
କୃଷ୍ଣ-ଆଗମନ-ଅସ୍ୱନେ,
ରହିଛୁ ଆଶା ସ୍ତୀ-ନସ୍ୱନେ,
ପଙ୍କଜମୁଖୀ ରାଇ,
କୃଷ୍ଣ-ଡ଼ଣସ୍ୱେ ବାଇ
(ହଂସଦୂତ—ଦରଘାକବ)

ଥିବ ଦୂର କର ପୁଲକ ପୁଲକ ପୁଲକ ଅଙ୍ଗେ ହେବ ଜାତ
ଥିର ଗତ ନନ୍ଦେ ମଲ୍ଲିକା ମଲ୍ଲିକା ମଲ୍ଲିକା ରହିଁ ହେବ ନତ
କୋକଳ, ଥିଲ କ ତାକୁ ଏତେ ଦଶା
ଅରେ ନାଶୁଥିବ ବବେକ ବବେକ ବବେକ ଆହା
ମୋ ସୁଦୃଶା ॥୧୭॥

ଅନ୍ୱସ୍ୱ – ରେ କୋକଳ, ସେ ପୁଲକ (ମଣିବଶେଷ) ପୁଲକ (ହର୍ଷ) ଦୂର କରଥିବ ଓ ତା ଅଙ୍ଗରେ ପୁଲକ (ରୋମାଞ୍ଚ) ଜାତ ହେଉଥିବ । ତାର ଥିର ଗତ ମଲ୍ଲିକା (ହଂସୀ) କୁ ନନ୍ଦା କରେ । ସେ ମଲ୍ଲିକା (ମଲ୍ଲୀଫୁଲ)

ଓ ମଲ୍ଲିକା (ମୀନ) କୁ ଦେଖି ନତ ହେବ । ତାକୁ ପୁଣି ଏତେ ଦଶା ଥିଲା ? ସେ ପୁଷ୍ପଶାର ବିବେକ (ବିରାଗ – ଏଠାରେ ବିଶେଷ ରାଗ ବା ଅନୁରାଗ) ବିବେକ (ବିସ୍ମର) କୁ ଏବେ ବିବେକ (ଉଦାସୀନଭାବ) ନାଶ କଲା ।

ଅର୍ଥ – ରେ କୋକିଳ ସେ ମଣିଚନ୍ଦ୍ର ଓ ହର୍ଷ ତ୍ୟାଗ କରିବ । ତା ଅଙ୍ଗରେ ରୋମାଞ୍ଚ ଜାତହୋଇଥିବ । ତାର ଧୀର ଗମନ ହଂସଗତିକୁ ନିନ୍ଦାକରେ । ସେ ମଲ୍ଲୀଫୁଲ ଓ ମୀନକୁ ଦେଖି (ମୁଁ ତାକୁ ମୀନନୟନା ବୋଲି ଡାକେ, ଏଣୁ ମୋ କଥା ମନେ ପକାଇ) ଦୁଃଖରେ ନଇଁ ପଡ଼ିବ । ମୋ ପୁଷ୍ପଶାକୁ ଏତେ ଦଶା ଥିଲା ! ମୋ ପ୍ରତି ତାର ଅନୁରାଗପୂର୍ଣ୍ଣ ବିସ୍ମରକୁ ବା ଭାବକୁ ବର୍ତ୍ତମାନ ବିରହ-କାଳୀନ ଉଦାସୀନତା ନାଶ କରୁଥିବ ।

ନାୟୀ ଅଙ୍ଗରେ ରୋମାଞ୍ଚ: —

ତନୁସ୍ପର୍ଶାଦସ୍ୟା ଦରମୁକୁଳିତ ହନ୍ତ ନୟନେ
ଉଦଞ୍ଚଦ୍ରୋମାଞ୍ଚ ବ୍ରଜତି ଜଡ଼ତାମଙ୍ଗମଖିଳମ୍ ।।
କପୋଲୌ ଘର୍ମାର୍ଦ୍ରୌ ଧ୍ରୁବମୁପରତାଶେଷବିଷୟଂ
ମନଃ ସାନ୍ଦ୍ରାନନ୍ଦଂ ସ୍ପୃଶତି ଝଟିତି ବ୍ରହ୍ମପରମମ୍ ।।

(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

ମଲ୍ଲୀଫୁଲ ଦର୍ଶନରେ ବିରହିଣୀ: —

ଦରବିଦଳିତ ମଲ୍ଲୀବଲ୍ଲିଚଞ୍ଚତ୍ପରାଗ –
ପ୍ରକଟିତପଟବାସୈର୍ବାସୟନ୍ କାନନାନି
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍‌ଗନ୍ଧବାହ ।।

(ଗୀତଗୋବିନ୍ଦ—ଜୟଦେବ)

ଯେତେ ସୁଧୀର ମହିଳା ହୋଇଥିବ
ମଧୁମାସେ ଯେବେ ବିରହିଣୀ ହେବ
ଦେଖି ମଲ୍ଲୀ, ମଲି ବୋଲି ଚମକିବ ।।

(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ

ଭୃଙ୍ଗ ସ୍ୱେଗ ଚନ୍ଦ୍ର ମଲ୍ଲୀ
ଦେଖି ଦେଖାନ୍ତି ଠାଉ ଦେଇ ମଲ୍ଲ
ଏହା ଦେଖି କାହିଁକି ନ ମଲ୍ଲ, ସଜନି ରେ !
(ବଦଗ୍‌ଧ ଚନ୍ଦ୍ରାମଣି – ଅଭିମନ୍ୟୁ)

ସ୍ମୃତିହି ମଲ୍ଲୀ ବନାଣ   ମଲ୍ଲ ବୋଲ ବାଳୀଣ
ସ୍ୱଳ ଚନ୍ଦ୍ରର କାଳୀଧବ
ଚମ୍ପା ଶମ୍ପାର ଗର୍ବ   ଯା ଝଳ କରେ ଖର୍ବ
ସେ ଅଙ୍ଗ ମଳିନ ହୁଣୀବ
ରେ ବଳାହକ !
ଚନ୍ଦ୍ରପୁରକୁ ଯେବେ ଯିବ
ଚକୋର ମୋତେ ଛନ୍ନ ହେବ
ଚନ୍ଦ୍ର ପ୍ରତିମା ପର   ଚେତନା ଦୂର କର
ଉଦ୍ଧିକ ଆଉକ ରହିବ ॥
(ବଳ ହଂକ ଚଉତିଶା—ବ୍ରଜରାଜ ସିଂହଦେବ)

ସୁଖଭୋଗ ପରେ ଦୁଃଖ ବା ମିଳନ ପରେ ବିରହରେ ଉଦାସୀନତା: –
ସୁଖଂ ହି ଦୁଃଖାନ୍ୟନୁଭୂୟ ଶୋଭତେ
ଯଥାନ୍ଧକାରାଦିବ ଦୀପଦର୍ଶନମ୍ ।
ସୁଖାତ୍ତୁ ଯୋ ଯାତି ଦଶାଂ ଦରିଦ୍ରତାଂ
ସ୍ଥିତଃ ଶରୀରେଣ ମୃତଃ ସ ଜୀବତି ॥
(ମୃଚ୍ଛକଟିକ – ମହାକବି ଶୂଦ୍ରକ)

ଦୂର କରିଥିବ ନବୀନା ମାଳିକା ମାଳିକା ମାଳିକା ମାଳିକା
ଦହିବ କଦନ, ମାଳିକା ମାଳିକା ମାଳିକା ନିଃସ୍ୱନେ ବାଳିକା
କୋକିଳ, ଦୂର କରେ ସେ ମୋ ଦୁଃଖକୁ
ଦୁଃଖଧ୍ୱଂସିନୀ ମୋ ମଣିବ ଅଳକ ଅଳକ ଅଳକ କ, ର, କୁ ॥୧୮॥

ଅନ୍ୱୟ—ରେ କୋକିଳ, ମୋ ନବୀନା ମାଳିକା (ମଲ୍ଲୀ) ମାଳିକା (ଫୁଲମାଳ) ମାଳିକା (କଣ୍ଠଭୂଷଣ) ଓ ମାଳିକା (ଗନ୍ଧମାଲ୍ୟ) ଦୂର କରିଥିବ ।

ସେ ବାଳାର କଦନ (ଶରୀର)କୁ ମାଳକା (ନଦୀ ଏଠାରେ ଯମୁନା) ମାଳକା (ମଦର ବିଶେଷ – ଏଠାରେ ମୃଗମଦ) ଓ ମାଲକା (ମାଳ୍ୟ—ତାକୁ ଦେଇଥିବା ମୋର ଫୁଲ ହାର) ଦହନ କରିବେ । ସେ ଦୁଃଖଧ୍ୱଂସିନୀ ମୋ ଦୁଃଖକୁ ଦୂର କରେ । ସେ କ (ମସ୍ତକ)ର ଅଳକ (ଉପାମେଘ) ଅଳକ (ଚୂର୍ଣ୍ଣକୁନ୍ତଳ) ଓ ଅଳକ (କୁଙ୍କୁମ)କୁ କୁ (ଖରାପ) ମନେ କରିବ ।

ଅର୍ଥ – ରେ କୋକିଳ, ମୋ ନବୀନା ମଲ୍ଲୀହାର, କର୍ଣ୍ଣଭୂଷଣ ଓ ଗନ୍ଧମାଲ୍ୟ ଦେଇବଣି । ତାର ଶରୀରକୁ ଯମୁନା ନଦୀ, ମୃଗମଦ ଓ ମୋର ପ୍ରଦତ୍ତ ମାଲ୍ୟ ଦହନ କରିବେ, କାରଣ ଏମାନଙ୍କୁ ଦେଖି ଓ ଚନ୍ଦ୍ରାକର ମୋ କଥା ତାର ମନେ ପଡ଼ିବ । ସେ ଦୁଃଖନାଶିନୀ ମୋ ଦୁଃଖକୁ ଦୂର କରେ । ସେ ତାର ମସ୍ତକସ୍ଥିତ ମେଘବର୍ଣ୍ଣର କୃଷ୍ଣ ଚୂର୍ଣ୍ଣକୁନ୍ତଳକୁ ଓ କୁଙ୍କୁମ କୁ ମୋ ବିରହରେ କୁ ଅର୍ଥାତ୍ ଖରାପ ବା ଅପ୍ରିୟ ମନେ କରିବ ।

ବିରହିଣୀର ମାଳା ତ୍ୟାଗ: –

ପୀନୋତ୍ତୁଙ୍ଗସ୍ତନକଳଶଯୋଗ୍ୟାରହାରଂ ନ ଧତ୍ତେ
ହସ୍ତେନାପି ସ୍ପୃଶତି ସହସା ନୈବ କର୍ପୂରବାଟୀମ୍ ।
ମଞ୍ଚଂ ନାପି ଶ୍ରୟତି ଶଶିରୁ ହଂସତୂଲାସ୍ତରଢ୍ୟଂ
ତା ତ୍ୱନ୍ ତନ୍ୱୀ ଗୁରୁଜନଭୟାଦ୍‌ଗୋପ୍ତୁକାମା ସ୍ୱତାପମ୍ ॥

(ସୁଭାଷିତରତ୍ନଭଣ୍ଡାଗାର)

ସ୍ତନବିନିହିତମପି ହାରମୁଦାରମ୍
ସା ମନୁତେ କୃଶତନୁରିବ ଭାରମ୍ ॥

(ଗୀତଗୋବିନ୍ଦ – ଜୟଦେବ)

ବିପାଣ୍ଡୁଭିର୍ମ୍ଳାନତୟା ପୟୋଧରେ –
ଷ୍ଟ୍ରୁତା ଚିରସ୍ପର୍ଶହେମଦାମଭିଃ ।
ଉପ୍ତଂ କଦମ୍ବାନିଲଭର୍ତ୍ତ୍ୟୟେନ
ଦର୍ବଧୂତାଂ କୃଶତା ନ ହି ଯଜତେ ॥

(କିରାତାର୍ଜ୍ଜୁନୀୟ – ଭାରବୀ)

ନାସ୍ତି ଦୁଃଖହରଣକାରଣୀ:—

ବଧୂମୁଖ-ସୁଧାଂଶୁ ହାସ-ପୀୟୂଷ
ଗୁହ୍ଣି ଚକ୍ଷୁ-ଚକୋର ହେଲ ତୋଷ
ହୃଦ-କୁମୁଦ ପ୍ରମୋଦ ବଢ଼ିଲ
ଲଜ-ଅନ୍ଧାରେ ବିପତ୍ତି ପଡ଼ିଲ ॥
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ଧୀରେ ଗୃହିଁ ନେନେ କକୁଭ କକୁନ୍ଧ କକୁଭ କକୁଭ କକୁଭ
ଧବଳ ସଦନ ଗହନ ଗହନ ଗହନ ପ୍ରାୟେ ଅସୁଲଭ
କୋକିଳ, ଧରିଥିବ ସତେ ଜୀବନ
ଧୀରେ ଗୃହିଁ ବାଳା ଗହନ ଗହନ ଗହନମୁଖୀ ତେଜି ଜ୍ଞାନ ॥୧୯॥

ଅନ୍ୱୟ – ହେ କୋକିଳ, ସେ ନୟନରେ କକୁଭ (ଦିଗ) କକୁଭ (ବୀଣାର ଲଉଡ଼ୁମ୍ବୀ) କକୁଭ (ବୀଣାର ଶେଷଭାଗ କାଷ୍ଠ) କକୁଭ (ବନମଲ୍ଲୀ) ଓ କକୁଭ (ପକ୍ଷୀ) ଦେଖିବ । ଦୁଃଖରେ ତାର ଧବଳସଦନ (କୋଠାଘର) ତାକୁ ଗହନ (ନିବିଡ଼) ଗହନ (ଦୁର୍ଗମ) ଗହନ (ବନ) ପରି ଅସୁଲଭ (ଅମଙ୍ଗଳ ବା ଅସୁଖକର) ଲାଗିବ । ସତେ କଣ ସେ ଜୀବନ ଧରି ଥିବ । ସେ ଗହନ (ବନପ୍ରାନ୍ତ)କୁ ଦେଖି ଗହନ (ଗମ୍ଭୀର) ଓ ଗହନ (ଦୁଃଖରେ ଆବୃତ) ବଦନା ଜ୍ଞାନ ତେଜିଥିବ ।

ଅର୍ଥ – ରେ କୋକିଳ, ସେ ଦିଗମାନଙ୍କୁ ଗୃହିଁ (ନୈରାଶ୍ୟରେ) ବୀଣା ବଜାଇବାକୁ ଆଣି ବଜାଇ ନ ପାରି କେବଳ ବୀଣାର ଲାଉତୁମ୍ବୀ ଓ ଶେଷଭାଗକାଷ୍ଠକୁ ଗୃହିଁ ରହିବ (ଦୁଃଖରେ ଅଶ୍ରୁମୋଚନ) ବନମଲ୍ଲୀ ଓ ପକ୍ଷିସ୍ୱନ ତାକୁ ଦୁଃଖ ଦେବେ । ତାର କୋଠାଘର ତାକୁ ଦୁର୍ଗମ ନିବିଡ଼ ବନ ପରି ଅସୁଖକର ହୋଇଥିବ । ସତେ କଣ ସେ ଜୀବନରେ ଥିବ ? ସେ ବନପ୍ରାନ୍ତକୁ ଗୃହିଁ (ମୋତେ ନ ପାଇ) ଗମ୍ଭୀର ଦୁଃଖରେ ବିରସବଦନା ବା ଅଯତ୍ନକେଶ ଆବୃତ ବଦନା ହୋଇ ଉତ୍କଣ୍ଠିତ ପ୍ରାଣରେ ବସିଥିବ ।

ବିରହିଣୀର ନୈରାଶ୍ୟ:—

ନୀର ତେଜି ପ୍ରିୟା ଜଗତେ ନୟନୁଁ ନୀରସମନେ ନୀରବେ
ଜରେଖି ମୋ ପଥ ଜଗଣ ହୋଇବ ନାସ୍ତିରତନ ମୋ ଏବେ
ଜଣି ଉଦୟ ବସି
ଜନ୍ମୁଥିବ ବନ୍ଧୁ ମୃଦୁହାସୀ ॥

(ବିରହବାନ୍ଧବୀ—ଦରଦୀକବି)

ବିରହିଣୀର ବୀଣାବାଦନରେ ଅସମର୍ଥତା.—

ଉତ୍ସଙ୍ଗେ ବା ମଳିନବସନେ ସୌମ୍ୟ ! ନିକ୍ଷିପ୍ୟ ବୀଣାଂ
ମଦ୍‌ଗୋତ୍ରାଙ୍କଂ ବିରଚିତପଦଂ ଗେୟମୁଦ୍‌ଗାତୁକାମା ।
ତନ୍ତ୍ରୀମାର୍ଦ୍ରାଂ ନୟନସଲିଳୈଃ ସାରୟିତ୍ୱା କଥଞ୍ଚିଦ୍-
ଭୂୟୋ ଭୂୟଃ ପୁନରପି ପୁନଃ ମୂର୍ଚ୍ଛନାଂ ବିସ୍ମରନ୍ତୀ ॥

(ମେଘଦୂତ — କାଳିଦାସ)

ବୀଣାମଙ୍କେ କଥମପି ସଖୀପ୍ରାର୍ଥନାଭିର୍ବିଧାୟ
ସ୍ୱୈରଂ ରତ୍ୟାଂ ସରସିଜଦୃଶା ଗାତୁମାରବ୍ଧମେବ ।
ତନ୍ତ୍ରୀବୃନ୍ଦ୍ୟା କମପି ବିରହକ୍ଷୀଣଦୀନାଙ୍ଗବଲ୍ଲୀ—
ମେନାମେବ ସ୍ପୃଶତି ବହୁଶୋ ମୂର୍ଚ୍ଛନା ତନ୍ତ୍ରମେତମ୍ ॥

(ପୁଷ୍ପିତରହସ୍ୟଖଣ୍ଡ ଗାର)

ବିରହିଣୀ ଗୃହକୁ ବନପରି ମଣେ: —

ଆବାସୋ ବିପିନାୟତେ ପ୍ରିୟସଖୀମାଲାପି ଜ୍ୱାଲାୟତେ
ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଲାକଲାପାୟତେ ॥

(ଗୀତଗୋବିନ୍ଦ — ଜୟଦେବ)

ଘନକୃଷ୍ଣକେଶା ଘରମଣୁଥିବ ଗହନ କାନନ ପରି
ଘନସାର ଅପଘନେ ବୋଳି ଆହା ବସିଥିବ ମୋର ଗୋରି
ଘୋଷି ଘୋଷି ମୋ ନାମ
ଘଟେ ଥିବ କି ଆଉ ତା ପ୍ରାଣ

(ବିରହବାନ୍ଧବୀ—ଦରଦୀକବି)

ୟଥା ଏଠାରେ ବିରହୋତ୍କଣ୍ଠିତା ନାୟିକାଃ—

ଉକ୍ତା ଭବତ ଯା ଯସ୍ୟାଃ
ସଙ୍କେତଂ ନାଗତଂ ପ୍ରିୟଃ ।
ତସ୍ୟାଽନାଗମନଂ ହେତୁଂ
ଚିନ୍ତୟାତ୍ୟାକୁଳା ଯଥା ॥

(ଶୃଙ୍ଗାରତିଲକ—କାଳିଦାସ)

ନୂତନ ପରଧ ପରଧ ପରଧ ପରଧ ପ୍ରାପ୍ତେ ଥିବ ହୋଇ
ନେତ୍ରଲୀଳା କଉଶିକ କଉଶିକ କଉଶିକ ଚିତ୍ର ଦିଶଇ
କୋକିଳ, ନବ ଅଙ୍ଗନା ସେ ରମଣୀ
ନଯ୍ୟନ କେସଗ୍ଧ କେ, ସର କେଶରୀକଟି ରସିକା ଶିରୋମଣି ॥୨୦॥

ଅନ୍ୱୟ—ରେ କୋକିଳ, ନୂତନ ପରଧ (ଚନ୍ଦ୍ର) ତାକୁ ପରଧ (ବଜ୍ର) ଓ ପରଧ (ପର୍ବତ) ସମାନ ପରଧ (ବାଧା) ହୋଇଥିବ । ତାର ନେତ୍ରଲୀଳା କଉଶିକ (ଶୃଙ୍ଗାର ରସ) କଉଶିକ (ସାପୁଆକେଳା) ଓ କଉଶିକ (ପେଚ୍ଚା)ର ଚିତ୍ର ଧାରଣ କରେ । ସେ ନବନାଗରୀ ରମଣୀ କେଶରୀ (ସିଂହ) କଟି ରସିକା ଶିରୋମଣିର ନଯ୍ୟନ କେସଗ୍ଧ (ପଦ୍ମ) କୁ କେ (କଏ) ସର (ସମାନ ହେବ ।

ଅର୍ଥ—ରେ କୋକିଳ, ନୂତନ ଚନ୍ଦ୍ର ତାକୁ ବଜ୍ର ଓ ପର୍ବତ ସମାନ ଆଘାତ ଦେବ । ତାର ନେତ୍ରଲୀଳା ଶୃଙ୍ଗାରକାଳରେ ଏତେ ଚଞ୍ଚଳ ଯେ ତାହା ସାପୁଆକେଳା ଓ ପେଚ୍ଚାର ନୟନ ଚଞ୍ଚଳତାକୁ ନିନ୍ଦା କରେ । ସେ ନବବାଳା, ରସିକାଶ୍ରେଷ୍ଠା, ସିଂହମଧ୍ୟମାର ନୟନପଦ୍ମ ଅତୁଳନୀୟ ॥

କେଶରୀ ଶବ୍ଦର ଅନ୍ୟତ୍ର ପ୍ରୟୋଗ—

ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରୀ କେ ସରି ।
ବିଦାର କରନ୍ତୁ କରୀ-କେଶରୀ କେଶରୀ
ବିଷିନ ମାତ୍ରକ ଏଥି କେଶରୀ କେଶରୀ ॥

(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ପଦ୍ମନେତ୍ର କର ଘୂର୍ଣ୍ଣିଲେ କେଶରୀ କେଶରୀ ଭଜିବେ ମଧ୍ଯକ
ପଡ଼ିବ ମୂର୍ଚ୍ଛାରେ ପତଙ୍ଗ ପତଙ୍ଗ ପତଙ୍ଗ ଦେଖିଲେ ସନ୍ଧିକ
କୋକିଳ, ପୀନସ୍ତନୀ ଏଥି ସନ୍ଧିଲ
ପଦ ସ୍ୱର୍ଗ କରି ଲୋଡ଼ିଣ ଆଲୋକ ଆଲୋକ ଆଲୋକ ହୋଇଲା ॥୨୧॥

· ଅନ୍ୱୟ – ରେ କୋକିଳ, ସେ ତାର ପଦ୍ମନୟନ ଟେକି (କଣେଇ) ଘୂର୍ଣ୍ଣିଲେ (ତା କଟାକ୍ଷ ବାଣରେ) କେଶରୀ (ସିଂହ) ଓ କେଶରୀ (ଗଜ) ମଧ୍ୟକୁ ଭଜିବେ । ପତଙ୍ଗ (ସୂର୍ଯ୍ୟ) ପତଙ୍ଗ (ଅଗ୍ନି) ଓ ପତଙ୍ଗ (ବାଣ) ଦେଖିଲେ ମୋ ସଜନୀ ମୂର୍ଚ୍ଛିତା ହେବ । ମୋ ପୀନସ୍ତନୀ ଏ ଦୁଃଖ ସହିବ ? ମୋ ପଦକୁ ସ୍ୱର୍ଗ (ସୁଖ ଓ ମୁକ୍ତି ଧାମ) ମନେ କରି ମୋର ଆଲୋକ (ଦର୍ଶନ) ଲୋଡ଼ି କେବଳ ଆଲୋକ (ଦୃଷ୍ଟିପଥ) ଓ ଆଲୋକ (ସ୍ମୃତି) ମାତ୍ର ରହିଲା ।

ଅର୍ଥ—ରେ କୋକିଳ, ମୋ ରାଧା ତାର ପଦ୍ମନୟନରେ କଟାକ୍ଷ ହାଣି ଘୂର୍ଣ୍ଣିଲେ ତା କଟାକ୍ଷବାଣରେ ସିଂହ ଓ ଗଜ ପ୍ରଭୃତି ମଧ୍ୟରେ ଟଳି ପଡ଼ିବେ । ସେ ସୂର୍ଯ୍ୟ, ଅଗ୍ନି ଓ ବାଣ (କାମ ବାଣ) କୁ ସହିପାରିବ ନାହିଁ । ମୋ ପୀନସ୍ତନୀ ଏ ଦୁଃଖ ସହିବ ! ମୋ ପଦକୁ ସୁଖ ଓ ମୁକ୍ତି ଧାମ ମାନେ କରି ସୁସଜ୍ଜିତା ହୋଇ ମୋର ଦର୍ଶନ ଇଚ୍ଛାକରି ଶେଷକୁ ମୋତେ ନ ପାଇ କେବଳ ମୋ ଆଗମନପଥକୁ ଅନାଇ ରହି ତାର ମନରେ ମୋର ସ୍ମୃତି ମାତ୍ର ରହିଲା ।

ଏଠାରେ ନାୟିକା ବ୍ୟାଧ ସହ ତୁଳନୀୟଃ—

ଇୟଂ ବ୍ୟାଧାୟତେ ବାଲା
ଭ୍ରୂରସ୍ୟ କାର୍ମୁକାୟତେ
କଟାକ୍ଷାଶ୍ଚ ଶରାୟନ୍ତେ
ମନୋ ମେ ହରିଣାୟତେ ॥

(ଶୃଙ୍ଗାରତିଲକ – କାଳିଦାସ)

ରାଧା ଏଠାରେ ବାସକସଜ୍ଜା ନାୟିକା: –

ସ୍ୱବାସକବଶାତ୍କାନ୍ତେ ସମେଷ୍ୟତି ଗୃହଂ ପ୍ରତି
ସଜ୍ଜୀକରୋତି ଆତ୍ମାନଂ ଯା ସା ବାସକସଜ୍ଜିକା ॥
(ରସାର୍ଣ୍ଣବ ସୁଧାକର)

ଭବେଦ୍‌ବାସକସଜ୍ଜାସୌ ସଜ୍ଜିତାଙ୍ଗରତାଳୟା ॥
(ଶୃଙ୍ଗାର ତିଳକ – କାଳିଦାସ)

ସ୍ରକ୍‌ଚନ୍ଦନାମ୍ବରବିଭୂଷଣଭୂଷିତାଙ୍ଗୀ
ଯା ବଲ୍ଲଭାଗମନମାର୍ଗନିରୂଢ଼ଦୃଷ୍ଟିଃ ।
ତଳ୍ପଂ ଗତା ରୁଚିରେ ବାସଗୃହେଽବଶେତେ
ସା କୀର୍ତ୍ତିତା ଜଗତି ବାସକସଜ୍ଜିତେତି ॥
(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

କୁରୁତେ ମଣ୍ଡନଂ ଯସ୍ୟାଃ ସଜ୍ଜିତେ ବାସବେଶ୍ମନି ।
ସା ତୁ ବାସକସଜ୍ଜା ସ୍ୟାଦ୍ ବିଦିତପ୍ରେୟସଙ୍ଗମା ॥
(ସାହିତ୍ୟଦର୍ପଣ—ବିଶ୍ୱନାଥ କବିରାଜ)

ରତିକ୍ରୀଡ଼ାକୁଞ୍ଜଂ କୁସୁମଶୟନୀୟୋଜ୍ଜ୍ୱଳରୁଚିଂ
ବପୁଃ ସାଲଂକାରଂ ନିଜମପି ବିଲୋକ୍ୟ ସ୍ମିତମୁଖୀ ।
ମୁହୁର୍ଧ୍ୟାୟଂ ଧ୍ୟାୟଂ କମପି ହରିଣା ସଙ୍ଗମବିଧିଂ
ସମୃଦ୍ଧ୍ୟନ୍ତେ ରାଧା ମଦନମଦମାଦ୍ୟନ୍ମତିରଭୂତ୍ ॥
(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

କୁଚ୍‌କୁଟ କୁଟ ତଟରେ ପଲାୟିତ ଚନ୍ଦର ଅଭିସାରିକା
ଲଭିଲା ଧନ ଚନ୍ଦ୍ର ବର୍ତ୍ତି ଲୁଚି ନିଶାନ୍ଧରେ କରି ବକା
ସେ ଭଲେ, ତାର ବାସକସଜ୍ଜା ଯୁଗଳେ
ପ୍ରଶ୍ନବନ୍ତି ମ୍ଳାନ ଏକାବେଳେ । ଭଲା ଯେନାଯେନ ହୋଇଥିଲା ॥
(କୋଟିବ୍ରହ୍ମାଣ୍ଡସୁନ୍ଦରୀ – ଉପେନ୍ଦ୍ର ଭଞ୍ଜ)

ଆସିବେ ବୋଲି ନାଗର, ମଣ୍ଡିଥିଲି କେଳିପୁର,
କାଳି ବସିଲି ଜାଗର, ନିଶି ହୋଇ ଉଜାଗର,

ଶୋକଜଳେ ଦେଲେ ସେ ଭସାଇ
ରେ ପ୍ରିୟସହ୍ନ !
(ଲାବଣ୍ୟବତୀ – ଉପେନ୍ଦ୍ରଭଞ୍ଜ)

ଅଶ୍ରୁ ପୂରିତ ବେନି ଡୋଳେ । ନିରେଖେ ରହିଲା ନିଶ୍ଚଳେ ॥
କୃଷ୍ଣ ଆଗମେ ମନ ଦେଇ । ଏକାନ୍ତ ଶୁଭ ପ୍ରକାଶଇ ॥
(ଶ୍ରୀମଦ୍ଭାଗବତ—ଜଗନ୍ନାଥ ଦାସ)

କାହିଁକି ନଇଲେ ମୋର କୁଞ୍ଜକୁ ଶ୍ୟାମ ନାଗର
କି ମନ୍ତ୍ର କଲା ସେ କେଉଁ ଚତୁରୀ ରସିକାବର ।
ଜାଳି ରତ୍ନଦୀପାବଳୀ ଅତି ସୁଯତନ କରି
ମଣ୍ଡିଥିଲି କେଳିପୁର ସବୁ ହେଲା ଛାରଖାର ॥
(ସଙ୍ଗୀତାବଳୀ—ବନମାଳୀ ଦାସ)

କେଉଁ ନାଗରୀମଣି କେଳି ସଦନ
ନିଜ ଅଙ୍ଗ ସୁବେଶ କରି ଯତନ ।
ବିଚିତ୍ର ଚଳନ୍ତି ଜାତି କାଳିକା ବେଣି
ମୁକୁର ବୃନ୍ଦେ ବେଶ ହୁଥାଇ ପୁଣି ।
ପୁଂସ ଆଗତ ବିଳମ୍ବରେ ଲମ୍ବଇ
ଦ୍ୱାରକୁ ଯାଇ ପଥ ନିରେଖୁ ଥାଇ
ସଖୀ ଆଗତ ପାଦନ୍ୟାସ ଶୁଣିଲେ
ପ୍ରିୟ ମୋ ଆସିଲେ କି ମଣଇ ଭଲେ ।
(ରସମୁକ୍ତାବଳୀ—ଗଦାଧର ଭଞ୍ଜଦେବ)

ରଚିଛୁ ଏ ମଧୁଶଯ୍ୟା ଚିରବାଞ୍ଛିତ ଆହେ ବାଞ୍ଛିତ
ସାରା ଜୀବନର ଆଶା ଆକୁଳତା ସଯତନେ କରି ସଞ୍ଚିତ ।
ଏ ମଧୁ ଯାମିନୀ ହେବ କି ହେ ତବ
ମଧୁର ପରଶ ବଞ୍ଚିତ ॥
(ସଙ୍ଗୀତାବଳୀ – କାନ୍ତକବି ଲକ୍ଷ୍ମୀକାନ୍ତ)

ମୋହ ବଣରେ ସହ୍ନ ! କର ମୋତେ ପରିତ୍ରାଣ
ଦଗା ଦେଇ ସେ ନାଗର ନେଲେ ମୋ ପରାଣ ।

ଗ୍ରହବାର ସବଗନ୍ ହଜ, ଦଂଶେ ଗ୍ରହ ଦୁନେ ରାଶି ରଜ,
ଗ୍ରହ ତେର ମୋ ମରଣ ଆଜ,ଗ୍ରହଚନ୍ଦ୍ର ଯୋଗ କରଅଛୁ ମୁଁ ଠାଣରେ ॥
(ଗୀତଗଣିତ—ଦରଦୀକବି)

[ଅର୍ଥ—ଗ୍ରହବର—ବୁଧ—ସବ=ବୁଦ୍ଧି, ଗ୍ରହ ଦୂନେ ଆଠ ରାଶି —ବୃଷ୍ଟି, ଗ୍ରହ ତେର ବାର—ଯୋଗ=ଧ୍ରୁବ, ଗ୍ରହ ଚନ୍ଦ୍ର ଷୋହଳ—ଯୋଗ —ସିଦ୍ଧି ବା ସିଦ୍ଧ ।

ରେ ସଖୀ ! ସେ ନାଗର ଦଗା ଦେଇ ମୋ ପ୍ରାଣ ନେଲେ । ତୋତେ ରାଣ, ତୁ ମୋତେ ରକ୍ଷାକର । ମୋର ବୁଦ୍ଧି ଲୋପ ପାଇଲାଣି, ମୋତେ ବୃଷ୍ଟି ସବୁ କାମୁଡ଼ାକ ପରି ଲାଗୁଛି । ମୋର ମୃତ୍ୟୁ ନିଶ୍ଚୟ—ଏହା ମୁଁ ସିଦ୍ଧ କରୁଛି । ]

ତଲଫେ ବିନ ବାଲମ ମୋର ଜିୟା
ଦିନ ନାହିଁ ଚୈନ ରାତ ନାହିଁ ନିଂଦିୟା
ତଲଫ ତଲଫ କେ ଭୋର କିୟା ।
ତନ ମନ ମୋର ରହଂଟ ଅସ ଡୋଲେ
ସୂନ ସେଜ ପର ଜନମ ଛିୟା
ନୈନ ଥକିତ ଭଏ ପନ୍ଥ ନ ସୁଝୈ
ସାଇଁ ବେଦରଦୀ ସୁଧ ନ ଲିୟା ॥
(ଦୋହାବଳୀ – କବୀର ଦାସ)

ଆଲୀରୀ, ମେରେ ନୈନନ ବାଣ ପଡ଼ୀ ।
ଚିତ୍ତ ଚଢ଼ୀ ମେରେ ମାଧୁରୀ ମୂରତ ଉର ବୀଚ ଆନ ଅଡ଼ୀ ॥
କବକୀ ଠାଢ଼ୀ ପଂଥ ନିହାରୂଁ ଅପନେ ଭବନ ଖଡ଼ୀ ।
କୈସେ ପ୍ରାଣ ପିୟା ବିନ ରାଖୁଁ ଜୀବନ ମୂର ଜଡ଼ୀ
(ଦୋହାବଳୀ – ମୀରା ବାଈ)

ମଧୁର ମଧୁର ମେରେ ଦୀପକ ଜଲ୍
ଯୁଗ ଯୁଗ ପ୍ରତିଦିନ ପ୍ରତିକ୍ଷଣ ପ୍ରତିପଲ୍
ପ୍ରିୟତମ କା ପଥ ଆଲୋକିତ କର ॥
ପ୍ରତୀକ୍ଷା – ମହାଦେବୀ ବର୍ମା)

ସାଗ୍ର ଜଣି ଧର ତାରସ୍ୱ ତାରସ୍ୱ
ଅନନ୍ତମେଘ ବ୍ୟେଷେ ମାରବେ ଦାଁଡ଼ାସ୍ୱ
ପଲ୍ଲବଦଳେ ଶ୍ରାବଣ-ଧାରସ୍ୱ
ତୋମାର ବିରହ ବାଜେ ହେ ॥
(ଗୀତାଞ୍ଜଳି —ରବୀନ୍ଦ୍ରନାଥ ଠାକୁର)

ପ୍ରିୟଆଗମନ ଆଶା ହିଁ ବିରହିଣୀର ଏକମାତ୍ର ପନ୍ଥା: —

ଆଶାବନ୍ଧଃ କୁସୁମସଦୃଶଂ ପ୍ରାୟଶୋହ୍ୟଙ୍ଗନାନାଂ
ସଦ୍ୟଃ ପାତି ପ୍ରିଣସ୍ତି ହୃଦୟଂ ବିପ୍ରୟୋଗେ ରୁଣଦ୍ଧି ॥
(ମେଘଦୂତ—କାଳିଦାସ)

ସ୍ମୃତିହ୍ୱାସୀ ହେବ ବାଳୀକ ବାଳୀକ ବାଳୀକ ରତି ମୋର ଗୁଣି
ଫେନୁଛି ନ ବୃନ୍ଦ୍ୱିଁ କାଳକା କାଳକା କାଳକା ପରା ଏକ ମଣି
କୋକିଳ, ଫୁରୁଣା ଗୁଡ଼ିଥିବ ପ୍ରାଣ,
ଫୁଲଲିଟକେଶୀ କେକୀନୀ କଳାପ କଳାପ କଳାପ ଦେଖିଣ ॥୨୨॥

ଅନ୍ୱୟ—ରେ କୋକିଳ, ସେ ସ୍ମୃତିହ୍ୱାସୀ ବାଳୀକ (କନ୍ୟା) ମୋର ରତି ଚନ୍ଦ୍ରାକର ବାଳୀକ (ବାଳା ବା ବାତୁଳ) ଓ ବାଳୀକ (ବୟଃସନ୍ଧିକାଳର ରତି) ମନେ ପକାଇ ଫେନୁଛି (କିପରି ହେଲେ) କାଳକା (କଳାମେଘ) କାଳକା (ପର୍ବତ) ଓ କାଳକା (ଗ୍ରୀବାରୁ ନାଭିଯାଏ ଲମ୍ବିଥିବା ରୋମାବଳୀ) ମାନଙ୍କୁ ବୃନ୍ଦ୍ୱିଁ ନ ଥିବ । ସେ ଫୁଲଲିଟ (ଭ୍ରମର) କେଶୀ କେକୀନୀ (ମୟୂରୀ) ର କଳାପ (ପୁଚ୍ଛ) କଳାପ (ଚନ୍ଦ୍ର) ଓ କଳାପ (ଧନୁ) କୁ ଦେଖି ପ୍ରାଣ ଗୁଡ଼ିଥିବ ॥

ଅର୍ଥ—ରେ କୋକିଳ, ସେ ସୁହାସିନୀ କନ୍ୟା ବୟଃସନ୍ଧି କାଳର ରତି ପ୍ରସ୍ତାବକୁ ମନେ ପକାଇ ବାତୁଳ ପ୍ରାୟ ହୋଇଥିବ । ସେ କିପରି ହେଲେ ମେଘକୁ (କୃଷ୍ଣବର୍ଣ୍ଣ ହେତୁ) ପାର୍ବତୀଙ୍କୁ (ତାର ବିରହ ବେଦନା ଉପଶମ ଲାଗି ପୂଜାର ଜଷ୍ଟଲତା ଯୋଗୁଁ) ଓ ଗ୍ରୀବାରୁ ନାଭିଯାଏ ଲମ୍ବି

ଥିବା ରୋମାବଳୀକୁ (କୃଷ୍ଣସର୍ପ ଭୟରେ ବା କନ୍ଦର୍ପର ଧନୁ ଭୟରେ) ଗ୍ରହଣ ନ ଥିବ । ସେ ଭ୍ରମରକେଶା ମୟୂର ପୁଚ୍ଛକୁ (ମୋର ଶିର ଭୂଷଣ) ଚନ୍ଦ୍ରଙ୍କୁ (ବିରହରେ ଚନ୍ଦ୍ର ଦୁଃଖଦାୟୀ) ଓ ଧନୁ କୁ (ଏଠାରେ ପୁଷ୍ପଧନୁ) ଦେଖି ପ୍ରାଣ ଗ୍ଲାନ୍‌ଥିବ ।

ବିରହିଣୀ ରାଧାର ବାଗ୍‌ଲତା:—

କ୍ୱ ନନ୍ଦକୁଳଚନ୍ଦ୍ରମାଃ କ୍ୱ ଶିଖିଚନ୍ଦ୍ରକାଲଂକୃତଃ
କ୍ୱ ମନ୍ଦ୍ରମୁରଲୀରବଃ କ୍ୱ ନୁ ସୁରେନ୍ଦ୍ରନୀଲଦ୍ୟୁତିଃ ।
କ୍ୱ ରାସରସତାଣ୍ଡବୀ କ୍ୱ ସଖି ଜୀବରକ୍ଷୌଷଧି—
ର୍ନିଧିର୍ମମ ସୁହୃତ୍ତମଃ କ୍ୱ ବତ ହନ୍ତ ହା ଧିଗ୍‌ବିଧିଃ ॥

(ଲଳିତମାଧବ – ରୂପଗୋସ୍ୱାମୀ)

ବିଲପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପମ୍ ॥

(ଗୀତଗୋବିନ୍ଦ – ଜୟଦେବ)

କାଳିକା ଶବ୍ଦର ଅର୍ଥ: —

କାଳିକା ବୋଲଇ ମେଘ ସମୂହକୁ କାଳିକା ଚଣ୍ଡିକା ପୁଣ ॥

(ଗୀତାଭିଧାନ – ଉପେନ୍ଦ୍ର ଭଞ୍ଜ)

ରମଣୀର ଆବକ୍ଷନାଭିଲମ୍ବିତ ରୋମାବଳୀ ମର୍କତ ଧନୁ ସଦୃଶ: —

ଅବଳା ବୋଲି ଯେ ବାଳାକୁ କହି
ଅଦ୍ଭୁତ ଅଶ୍ରୁତ ବଳ ଦେଖାଇ
ବଳି କରି ଘେନି ବଳି ଏଥିକି
ମର୍କତ-ଧନୁ କେ ବେନି ପୃଥ୍ୱୀକି
କଷ୍ଟେ ଧରିଅଛୁ ଝେକି ଯେ
ଜଘନ ଭଦ୍ରାସନ                    ଘେନି ହେଲି କି
ବଳବନ୍ତେ ଅଭିଷେକୀ ଯେ ॥

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

ସ୍ତନ ଉନ୍ନତ ଚକ୍ରବାଳ ସୀମାରେ ନେତ୍ର କମଳ ନ ଗଲାକ
ତରୁଣ-ଅରୁଣ-ଚରଣ ଯୁଗଳ ଆଲୋକର ଯୋଗ ନୋହିଲା

ଶ୍ୱେମାଳୀ, ଝଙ୍କାବ୍ରତ-କଣ୍ଠ-ଶିଙ୍କଳୀ
କି କାଳୀ କୁଣ୍ଡଳୀ ନାଚୁଥିଲେ ପଶେ ଗ୍ରନପେଙ୍କିଙ୍କାରୁ ଝଙ୍କାଳ ॥
(ବିଦଗ୍ଧ ଚିନ୍ତାମଣି—ଅଭିମନ୍ୟୁ)

କେକପୁଚ୍ଛ ସନ୍ଦର୍ଶନରେ ଶ୍ରୀକୃଷ୍ଣଙ୍କ ସ୍ମୃତି:—

ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶମ୍
ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶମ୍ ॥
(ଗୀତଗୋବିନ୍ଦ—ଜୟଦେବ)

କଳାପୀ ବରହୀ ଚୂଳ ଭ୍ରମ କରାଇ କୁନ୍ତଳ
ଚନ୍ଦ୍ରେ ରଖିଅଛୁ କି ସେ ସ୍ୱାନ୍ତ କୋରକ
କମଳାକ୍ଷ ଅପଘନ ଘନରସେ ପୁନଃପୁନଃ
ନିବେଶିତ ଅବିରତ ଚଉଦ୍ୱୃତକ
କର୍ଣ୍ଣେ ବେଣୁ ନାଦ ଦତ୍ତକ
କନ୍ଦଳ ଘଣ୍ଟି ନାଦରେ ବୀଣା ଗୁଞ୍ଜନ ॥
(କଳାକଉତୁକ—ଉପେନ୍ଦ୍ର ଭଞ୍ଜ)

ଭୁଙ୍ଗକଳା ତ ହେଲା ପ୍ରତ୍ୟକ୍ଷ
ଭୂଷା ଗୁଞ୍ଜ ପୁଞ୍ଜ କେକୀ ପୁଚ୍ଛ
ଭୁଲିବ କେ ଅବା ଏମନ୍ତ ଶୋଭାକୁ
ଆମ୍ଭବନ୍ତୁଁ ଚଢେ ଭାବ ସ୍ୱଚ୍ଛରେ ଭାବଦ !
(ଗ୍ରନ୍ଥଭୂଷଣ—ଉପେନ୍ଦ୍ର ଭଞ୍ଜ)

ନାଦଃ କୋଽପି ନିତମ୍ବିନୀଜନମନଃକ୍ଷୋଭକ୍ଷମଃ ଶ୍ରୂୟତେ
କାନ୍ତିଃ କାପି ଚଳତ୍ କଳାପମୁକୁଟାଲମ୍ବୀ ଚ ଚମ୍ବାଦ୍ୟତେ ।
ସ୍ୱୈରିଣ୍ୟଂ ତତ୍ ପ୍ରଭୃତି ସ୍ଖଳତ୍ୟପି ବଳତ୍ୟନ୍ତର୍ବିଳମ୍ବୋ ଦଳା—
ଦଶ୍ରାନ୍ତଂ ସଖି ଦୃଶ୍ୟତେ କମଭୂତୋ ମାହେନ୍ଦ୍ରଜାଲଂ ମହଃ ॥
(କିଶୋରଚନ୍ଦ୍ରାନନ ଚମ୍ପୂ—କବିସୂର୍ଯ୍ୟ ବଳଦେବ ରଥ)

ଶିରେ ଭୁଜଙ୍ଗ ଭୁଜ ପୁଚ୍ଛ ଶୋଭୁଛୁ
ନିନ୍ଦଇ ଇନ୍ଦ୍ର ଶରାସନ

ଅଳକାପନ୍ତି ବାଳଅଳି ଗଞ୍ଜଇ
ଦେଖି କେ ନୋହିବ ଉଚ୍ଛନ୍ନ
ଭ୍ରୂଲତା, କି ଅବା ମଦନକୋଦଣ୍ଡ
ଅଞ୍ଜନଲତାକୁ ଘୃଣ କରଅଛୁ
କଞ୍ଜନୟନ ପଞ୍ଚକାଣ୍ଡ ।।
(ମଥୁରାମଙ୍ଗଳ—ଭକ୍ତଚରଣ)

ସେ ଗୋ ବନରୁ ଆସୁଥାଇ ଗୃହ
ଶିରେ ବରହୀପୁଚ୍ଛ ଶୋହା ଝାଳ ।।
(ଗୋପୀଭାଷା—ଦନାଇ ଦାସ)

ଶ୍ୱେତ ମୁକ୍ତାମାଳେ ରତ୍ନଜାଏ ବକ୍ଷସ୍ଥଳ
ଶିଖି ଶିଖଣ୍ଡକ ଚୂଳେ ଗୁଞ୍ଜ ମୁଣ୍ଡମାଳ ।।
(ଶ୍ୟାମରାସୋତ୍ସବ – ବ୍ରଜନାଥ ବଡ଼ଜେନା)

ମୋର ମୁକୁଟ ମକରାକୃତକୁଣ୍ଡଳ ଅରୁନ ତଳକ ଦିୟେ ଭାଲ
ଅଧର ସୁଧାରସ ମୁରଲୀ ରାଜତ ଉର ବୈଜନ୍ତୀ ମାଲ –
ବସୋ ମେରେ ନୈନନମେଁ ନନ୍ଦଲାଲ ।
(ମୀରାବାଈ ଦୋହାବଳୀ)

ବାଟର ହେବ କି ତା ଲକ୍ଷଣ ଲକ୍ଷଣ ଲକ୍ଷଣ କାମ ଜିଣିବାକୁ
ବଦନ ତ ରାମ ଲକ୍ଷଣ ଲକ୍ଷଣ ଲକ୍ଷଣ ମୋ କାନ୍ତ ଜ୍ୱରକୁ
କୋକିଳ, ବାଳା କୋମଳା ରସିକିନୀ
ବସି ଚାହିଁଥିବ ପଦ୍ମିନୀ ପଦ୍ମିନୀ ପଦ୍ମିନୀ-ଗାମିନୀ ମୋ ଧନୀ ।୨୩।

ଅର୍ଥ – ରେ କୋକିଳ, ତାର ଲକ୍ଷଣ (ନାମ) ଲକ୍ଷଣ (ସ୍ୱରୂପ) ଓ ଲକ୍ଷଣ (ଦର୍ଶନ) ସତେ କଣ କାମ (କନ୍ଦର୍ପ)କୁ ଜିଣିବାକୁ ହେବ ? ତାର ବଦନ ରାମ (ରମଣୀୟ) ଲକ୍ଷଣ (ଶଶଚିହ୍ନ) ଲକ୍ଷଣ (ଚନ୍ଦ୍ର) ଲକ୍ଷଣ (ପ୍ରକୃତସିଦ୍ଧ ଔଷଧ) ଅଟେ । ମୋ ରସିକା କୋମଳାଙ୍ଗୀ ପଦ୍ମିନୀ (ହସ୍ତିନୀ) ଗମନୀ ଧନୀ ଏକାନ୍ତରେ ବସି ପଦ୍ମିନୀ (ପୁଷ୍କରିଣୀ)ର ପଦ୍ମିନୀ (ପଦ୍ମ)କୁ ଚାହିଁଥିବ ।

ଅର୍ଥ—ରେ କୋକିଳ, ତାର ନାମର ମାଧୁର୍ଯ୍ୟ, ରୂପର ସୌନ୍ଦର୍ଯ୍ୟ ଓ ଦର୍ଶନର ଜ୍ୟୋତି ଆଦି କଣ କନ୍ଦର୍ପକୁ ଜିଣିବାକୁ ହେବ ଅର୍ଥାତ୍ ତା ଯୋଗୁଁ ମୁଁ କନ୍ଦର୍ପକୁ ଜୟ କରେ । ତାର ମନୋହର ବଦନ ପଣତସ୍ୱ ଓ ସୁଲକ୍ଷଣ ମୋ କାମଜ୍ୱରକୁ ପ୍ରକୃଷ୍ଟସିଦ୍ଧ ଔଷଧ ଅଟେ । ମୋ କୋମଳାଙ୍ଗୀ ରସିକା ଗଜଗମନା ନିର୍ଜନରେ ବସି ପୁଷ୍କରିଣୀର ପଦ୍ମଫୁଲକୁ ଦେଖୁଥିବ ।

କନ୍ଦର୍ପକୁ ଜୟ କରିବା ଲାଗି ନାୟ୍ୟ ପ୍ରଧାନ ସହାୟ:—

ବାହୂ ଦ୍ୱୌ ଚ ମୃଣାଳମାସ୍ୟକମଳଂ ଲାବଣ୍ୟଲୀଳାଜଳଂ
ଶ୍ରୋଣୀ ତୀର୍ଥଶିଳା ଚ ନେତ୍ରଶଫରଂ ଧମ୍ମିଲ୍ଲଶୈବାଳକମ୍ ।
କାନ୍ତାୟାଃ ସ୍ତନଚକ୍ରବାକଯୁଗଳଂ କନ୍ଦର୍ପବାଣାନଳୈ—
ର୍ଦଗ୍ଧାନାମବଗାହନାୟ ବିଧିନା ରମ୍ୟଂ ସରୋ ନିର୍ମିତମ୍ ॥

(ଶୃଙ୍ଗାର ତିଳକ—କାଳିଦାସ)

ଅପୂର୍ବୋ ଦୃଶ୍ୟତେ ବହ୍ନିଃ କାମିନ୍ୟାସ୍ତନମଣ୍ଡଳେ ।
ଦୂରତୋ ଦହତେ ଗାତ୍ରଂ ହୃଦି ଲଗ୍ନସ୍ତୁ ଶୀତଳମ୍ ॥

(ଶୃଙ୍ଗାର ତିଳକ – କାଳିଦାସ)

ପ୍ରିୟ ପରିହର ମୟି ଦେଶବଦନଲତମିବପୁଲକିତମତିଦୁରବାପମ୍
ମଦୁରସି କୁଚକଳଶଂ ବିନିବେଶୟ ଶୋଷୟ ମନସିଜତାପମ୍ ।
ଅଧରସୁଧାରସମୁପନୟ ଭାମିନି । ଜୀବୟ ମୃତମିବଦାସମ୍
ତ୍ୱୟି ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ ॥

(ଗୀତଗୋବିନ୍ଦ – ଜୟଦେବ)

ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ
ହରତି ଦରତିମିରମତିଘୋରମ୍
ସ୍ଫୁରଦଧରଶୀଧବେ ତବ ବଦନଚନ୍ଦ୍ରମା
ରୋଚୟତି ଲୋଚନଚକୋରମ୍ ॥

(ଗୀତଗୋବିନ୍ଦ – ଜୟଦେବ)

କି ବଡ଼ ଇନ୍ଦ୍ରସମ୍ପତ୍ତି କି ବଡ଼ ହେବା ନୃପତି
ସବୁ ସୁଖ ଉତପତ୍ତି ସ୍ଥାନ ଦମ୍ପତି

ପାଣ୍ଡବେ ଯେନ ଦ୍ରୁପଦୀ          ସୀତା ଯେନ ରଘୁପତି
ମାନ ନ ଥିଲେ ବିପତ୍ତି ହେବ ପ୍ରାପତି
ନାଶଇ ବିରହ ତପତି
ମାର ଶରକୁ ସେ ବାଳା ବଜ୍ରରୂପତି ॥
(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

କେଉଁ ଗୋପୀକି ଅନାଇଣ ବୋଲନ୍ତି ତୋ ଅଙ୍ଗ କାମ ସରୋବର
କାନ୍ତି ସ୍ୱଚ୍ଛଜଳ କେଶ ଶୈବାଳ ବଦନ କମଳ ପ୍ରକାର
କମଳା, ନୟନଯୁଗଳ ଶଫରୀ
କୁଚ ଚକ୍ରବାକ ନଖକହ୍ଲାରକ ସକଳ ଜନମନୋହାରୀ ॥
(ରସକଲ୍ଲୋଳ—ଦୀନକୃଷ୍ଣ)

ଅତନୁ ସରିତକୁ ତୁ ମୋ ତରଣୀ
ଅନୁରୂପ ଏ ବାଣୀ ନୁହଇ ପୁଣି ॥
(ଅମ୍ବିକାବିଳାସ – ବଳଭଦ୍ର ଭଞ୍ଜଦେବ)

କାମନା ମନା କରି          ବିରସ ରସ ଧରି
ନ କରୁ କରୁଣା ନରତେ
ମୁଁ ମାର ମାରଣାରେ          ସୁକେଶୀ ଭସିଲରେ
ସେବାରେ ବାରେ ରଖ ମୋତେ,
ରେ ଜୀବବନ୍ଧୁ !
ବିପଦ ପଦକରେ ସାର
କଣ୍ଠତେ ଚଢେ ଖବ ଧର
ହାସ ରସର ସୁଧା          ପ୍ରସରୁ ସରୁ ମଧା
ଭରସା ରସାଳସା କର ॥
(ରାଧାମାଧବବିଳାସ – ରଘୁନାଥ ପରିଛା)

ପ୍ରିୟାର ଅଙ୍ଗସଙ୍ଗ ଲାଗି ବିରହୀର ଚିନ୍ତା:—
କଦା କାନ୍ତାଗାରେ ପରିମଳ-ମିଳନ୍ତ-ପୁଷ୍ପ-ଶୟନେ
ଶୟାନଃ କାନ୍ତାୟାଃ କୁଚକଳସଯୁଗ୍ମଂ ହୃଦି ବହନ୍ ।

ଅୟେ କାନ୍ତେ ! ମୁଗ୍ଧେ ! କୁଟିଳନୟନେ ! ଚନ୍ଦ୍ରବଦନେ !
ପ୍ରସୀଦେତ କ୍ଷୋଣନ୍ ନିମିଷମିବ ନେଷ୍ୟାମି ରଜନୀମ୍ ।।

(ଶୃଙ୍ଗାରରସାଷ୍ଟକ – କାଳିଦାସ)

ପ୍ରୀତ ଊଣାକରୁ ପଚ୍ଛେ ସୁମତ
ତାରେ ନ ଝୁଁଣିବ କାହିଁ ମୋ ଗତ ।।

(ରସିକ ହାରାବଳୀ—ଉପେନ୍ଦ୍ର ଭଞ୍ଜ)

ରସି ରସାଇ ଉରୁ ପରେ ବସାଇ ଖିରୁ
ଖସାଇଂ କ୍ରମେ ନାବ ଫେଇବ କ
ରତ ଉତ୍ସବେ ମ ତ ଦଣ୍ଡେ କଣବ ଗତ
ସ୍ତନେ କରଜ ଚହ୍ନ ଥୋଇବ କ
ରାଜୀବନୟନୀକ ପାଇବ କ ।।

(ର ୪ପଞ୍ଚକ – ଉପେନ୍ଦ୍ର ଭଞ୍ଜ)

ସଙ୍ଗିନୀରେ କାହ୍ନାଙ୍କୁ ମୁଁ କୋଳେ ବସାଇବ
ସୁଁମନଚନ୍ଦ୍ର ଚମ୍ବନ କା ପାଇଁ କଣବ
ସୁଧା ଗ୍ରହନୀରେ ବସି
ସୁଧାକର କରେ ପ୍ରିୟେ । କେ ଭାଷିବ ହସି ।।

(ସତୀଚନ୍ଦ୍ରକା—ମାଧବଚନ୍ଦ୍ର ମିଶ୍ର)

କିନ୍ତୁ କାଳିଦାସଙ୍କ ସମସାମୟିକ କବିମାନଙ୍କର ଅନ୍ୟ ଚନ୍ଦ୍ରା: —

କଦା ବାରଣସ୍ୟାମମରତଟିନୀ ରୋଧସି ବସନ୍
ବସାନଃ କୌପୀନଂ ଶିରସି ନିଦଧାନୋଽଞ୍ଜଳିପୁଟମ୍ ।
ଅୟେ ଗୌରୀନାଥ ! ତ୍ରିପୁରହର ! ଶମ୍ଭୋ ! ତ୍ରିନୟନ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ।
କଦା ବା ସାକେତେ ବିମଳସରୟୂତୀରପୁଳିନେ
ଚରନ୍ତଂ ଶ୍ରୀରାମଂ ଜନକତନୟା ଲକ୍ଷ୍ମଣଯୁତମ୍ ।
ଅୟେ ରାମ ! ସ୍ୱାମିନ୍ ! ଜନକତନୟାବଲ୍ଲଭ ! ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ।।

(ସୁଭାଷିତରତ୍ନଭାଣ୍ଡାଗାର)

କଦା ବୃନ୍ଦାରଣ୍ୟେ ବିମଲଯମୁନା ତୀର ପୁଲିନେ
ଚରନ୍ତଂ ଗୋବିନ୍ଦଂ ହଲଧରସୁଦାମାଦିସହିତମ୍ ।
ଅୟେ କୃଷ୍ଣ ! ସ୍ୱାମିନ୍ ! ମଧୁର ମୁରଲୀବାଦନ ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ॥

(ସୁଭାଷିତ ରତ୍ନ ଭାଣ୍ଡାଗାର)

ରମଣୀର ସଙ୍ଗଲାଭ ହିଁ କାମଜ୍ୱରର ପ୍ରକୃତିସିଦ୍ଧ ଔଷଧ:—

କ୍ୱ ଭ୍ରାତଶ୍ଚଲିତୋଽସି ବୈଦ୍ୟକଗୃହେ କିନ୍ତତ୍ର ଶାନ୍ତ୍ୟୈ ରୁଜାମ୍
କିଂ ତେ ନାସ୍ତି ସଖେ ! ଗୃହେ ପ୍ରିୟତମା ସର୍ବାନ୍ ଗଦାନ୍ ହନ୍ତି ଯା ।
ବାତସ୍ତତ୍କୁଚକୁମ୍ଭମର୍ଦ୍ଦନବଶାତ୍ ପିତ୍ତଂ ଚ ବକ୍ତ୍ରାମୃତାତ୍
ଶ୍ଳେଷ୍ମାଣଂ ବିନିହନ୍ତି ହନ୍ତ ! ସୁରତବ୍ୟାପାରକେଳିଶ୍ରମାତ୍ ॥

( ଶୃଙ୍ଗାର ତିଲକ – କାଳିଦାସ)

ଦୃଷ୍ଟିଂ ଦେହି ପୁନର୍ବାଲେ ! ହରିଣାୟତ-ଲୋଚନେ
ଶ୍ରୂୟତେ ହି ପୁରା ଲୋକେ ବିଷସ୍ୟ ବିଷମୌଷଧମ୍ ॥

( ଶୃଙ୍ଗାର ତିଲକ— କାଳିଦାସ )

ବଳତ୍ରୟାବଦ୍ଧ-ସୁସୂକ୍ଷ୍ମମଧ୍ୟେ !
ବିଷୋପହାଦ୍ୟୌଷଧି ମନ୍ତ୍ର ରୂପେ !
ମନୋଜବାଣୌଘ-ବିଷାକ୍ତଗାତ୍ର-
ମନୁଗ୍ରହଂ ମାଂ କୁରୁ ସମ୍ପ୍ରତି ତ୍ୱମ୍ ॥

(ଚୌର ପଞ୍ଚାଶିକା – ବିଲ୍ହଣ)

ତ୍ରିବଳୀରେ ମଧ୍ୟ ଦେଶ ଶୋଭନ
ଉପମା ନାହିଁ ତା ତିନି ଭୁବନ
କନ୍ଦର୍ପ ବିଷ-ଔଷଧି – ରୂପିଣୀ !
ରୂ ପୁଣି ଅଦ୍ଭୁତ ସୁର ବାରେଣୀ
ଅନୁଗ୍ରହ କର
ମାର ଶର ବିଷୁ ଉଦ୍ଧର ଧର ॥

(ଇଚ୍ଛାବତୀ —ଧନଞ୍ଜୟ ଭଞ୍ଜ)

ମମ ଅମର କର ନବପଲ୍ଲବ ଅଧରର ରସ ଅଶନ
ଛଇଲଗଣର ବଡ଼ ଅଯଶ ଏ ସମସ୍ତ କରଇ ଏସନ
ଜଳଦ ! ଗଦବତ ସ୍ୱର ଗରଳ
ଶମନ ଭବନ ଗମନ ଉତ୍ସବ ଉତ୍ସବ ଇଚ୍ଛଇ ଏମନ ଚପଳ ।।

(ଅବନା ରସ ତରଙ୍ଗ — ଉପେନ୍ଦ୍ର ଭଞ୍ଜ)

ଔଷଧ କେବଳ ବାଲା ମୋ ବିରହ ବ୍ୟାଧି କି
ଔଷଧୀଶ ଆଦରଣ ତାମରସ ମୁଖୀ ପାଣି
ଗ୍ରହିଲି ମୁଁ ଯା ବୁଝିଲି ହୁଡ଼ିଲି କି ବୁଦ୍ଧି କି ।।

(ଚୌପଦୀଚନ୍ଦ୍ର — ଉପେନ୍ଦ୍ର ଭଞ୍ଜ)

ପୁରୁଷ ତନ୍ଦ୍ରି କି ପ୍ରତ — ଶରେ ନ ପାରିଲି ବର୍ତ୍ତି
ଲୁଟିବାରୁ ହୃଦସ୍ତେ ତା ଫୁଟି ରହିଲା ।
ସୁଦସ୍ତା ବନ୍ଧ ଚରୁଷି ହୃଦସ୍ତରେ ଦସ୍ତା ଭରି
ଉରଜ-ଚୁମ୍ବକ ଯୋଗ କରି କାଢ଼ିଲି
ଆଲିଙ୍ଗନ ଲେପକୁ ଦେଇ
ଅଧର-ଅମୃତ ମହୌଷଧି ଚଖାଇ ।

(ଶଶୀରେଖା — ପଦ୍ମନାଭ ଶ୍ରୀ ଚନ୍ଦନ)

Yet though I can not be loved
Still let me love.

( Lord Byron )

More happy love, more happy, happy love,
For ever warm and still to be enjoyed.
For ever pantiing and for ever young,
All breathing human passions far above.

(Ode to Gracian Urn—John Keats)

ଭଜିଥିବ ଏବେ ରଜନ୍ତ ରଜତ ରଜତ କାମ ମୁଖେ ପଡ଼ି
ଭଲ ନ ଗୃହ୍ଣିବ ମାରି ତ ସ୍ୱରିତ ହରିତ ହରିତ-ନେତ୍ରୀ ନେଇ ଫେଡ଼ି
କୋକିଳ, ଭାବବନ୍ତ ଭାବ ଜାଣଇ
ଭଲ ଦୂର ହେଲି ଭାବନା ଭାବନା ଲଜ୍ଜାରେ ଜୀବ ଯାଉ ନାହିଁ ।।୨୩।।

ଅନ୍ୱୟ – ରେ କୋକିଳ, କାମ ମୁଖେ (କନ୍ଦର୍ପର କବଳରେ) ପଡ଼ି ତାର ରଜତ (ହ୍ରାଗଦାନ୍ତ) ରଜତ (ଧବଳ) ରଜତ (ହାର) ଷ୍ଟଳିଥିବ (ଏଣେ ତେଣେ ଛିଡ଼ି ପଡ଼ିଥିବ)। ସେ ହରିଣ (ନୀଳନେତ୍ରୀ) ହରିଣ (ହରିଣ) ଓ ହରି (ଚନ୍ଦ୍ର) ତ ଭଲପାଏ ସହିବ ନାହିଁ । ସେ ସ୍ନେହବତୀ (ଚତୁରା ବା ରସବତୀ) ଭାବ ଜାଣେ । ସେ ଭାବିନୀ (ସୁଲକ୍ଷଣା) ଭାବିନୀ (ପ୍ରିୟା) (ମୋ ପାଖରୁ ଦୂର ହେଲା । ସେ ଲଜ୍ଜାରେ ମୋ ଜୀବନ ଯାହା ନ ଯାଉଛି ।

ଅର୍ଥ—ରେ କୋକିଳ, କନ୍ଦର୍ପର କବଳରେ ପଡ଼ି ସେ ଅଚେତ ହୁଅନ୍ତେ ତାର ହ୍ରାଗଦାନ୍ତ ପରି ଧଳା ମୋତିହାର ଛିଡ଼ି ଏଣେତେଣେ ପଡ଼ିଥିବ । ସେ ନୀଳନେତ୍ରୀ (କୃଷ୍ଣଡୋଳା ବିଶିଷ୍ଟା) ତାର ନେତ୍ର ଖୋଲି ହରିଣମାନଙ୍କୁ ଓ ଚନ୍ଦ୍ରଙ୍କୁ ସହିବ ନାହିଁ । ସେ ରସବତୀ ପ୍ରେମ ଜାଣେ । ସେ ସୁଲକ୍ଷଣା ସଖିନାୟିକା ମୋ ପ୍ରେୟସୀତମା ମୋ ପାଖରୁ ବର୍ତ୍ତମାନ ଦୂରରେ – ଏ ଦୁଃଖରେ ମୋ ନିର୍ଲଜ ଜୀବନ ଯାହା ନ ଯାଉଛି ।

ପଢ଼ ବିରହରେ ନାସ୍ତି କନ୍ଦର୍ପକବଳିତା:—

ଅଧିବସତି ବସନ୍ତେ ମତ୍ତ କାମା ଦୁରନ୍ତେ
ନବକିଶଳୟତଳ୍ପଂ ପୁଷ୍ପିତାଙ୍ଗାରକଳ୍ପମ୍ ।
ବିରହମସହମାନା ଚନ୍ଦବାଣସମାନା
ଚକିତମୃଗସମାନାଲୋଚନା କୋମଳାଙ୍ଗୀ ।।

(ପୁଷ୍ପବାଣ ବିଳାସ—କାଳିଦାସ)

ଅନ୍ତର୍ଗତା ମଦନବହ୍ନିଶିଖାବଳୀ ଯା
ସା ବାଧତେ କମଥ ଚନ୍ଦନପଙ୍କଲେପୈଃ ।
ଯଃ କୁମ୍ଭକାରପବନୋପରି ପଙ୍କଲେପ—
ସ୍ତାପାସ୍ତ କେବଳମସୌ ନ ଚ ତାପଶାନ୍ତ୍ୟୈ ।।

(ଶୃଙ୍ଗାରତିଳକ – କାଳିଦାସ)

କାମଂ ଦୂରେ ସହଚରୀ ବଶବର୍ତ୍ତି ଯତ୍ନଂ ସଦୈବ
ନେଦଂ ଲୋକୋତ୍ତରମପି ବିପଦ୍ଦୁର୍ଦିନଂ ଦୁନୋତି ।

ଆଶା ଜାଲୋ ହୃଦ କଳ ଧୃତାଃ ପ୍ରାଣବୋଧ ରୁ ସୋ ମେ
ସୋଽସ୍ୱଂ ପୀଡ଼ାଂ ଜନଡ଼ବଡ଼ବାବଣ୍ଡି ତ୍ରୀବ୍ରତନୋଧ ।।
(ଉଦ୍ଧବ ସନ୍ଦେଶ – ରୂପଗୋସ୍ୱାମୀ)

ବିରହ ବ୍ୟାଧିରେ ତା ଜୀବନ ଦେହୁ
ଯାଇଥିବ ସିନା ଗୁଳି ।
(କାଦମ୍ବିନୀ – ବଡ଼କୁମାର ବଳଭଦ୍ର ଦେବ)

ମରାଳଗମନା ମାଉଣରେ ଆହା ହେଉଥିବ କଲବଲ
ମରମର କୋଣ ମରମରେ ଗୁପି ଝୁଉନେ ହୋଇ ବିକଳ
ମଲି ମଲି ବୋଲିଣ
ମଞ୍ଚ ପରେ ଗଡ଼ୁଥିବ ଜାଣ ।।
(ବିରହବାନ୍ଧବୀ—ଦରଦୀ କବି)

ବିରହିଣୀର ମୋତିମାଳ ଛିଣ୍ଡାଏ: –
ଆଶା ପଲଙ୍କରେ ବସି ଖିଆ ଲେଖୁଥିବ ରେ
ଗଳେ ଥିବା ମୋତିମାଳା ଛିଡ଼ି ଲୋଟୁଥିବ ରେ
ଆହା ମୋ ଜୀବନଧନ ଜୀବନେ କି ଥିବ ରେ…
(ସଙ୍ଗୀତ – ଉପେନ୍ଦ୍ର ଭଞ୍ଜ)

ବିରହିଣୀର ଦଶଦିଗ ଅନ୍ଧକାରମୟ:—
ପାଞ୍ଚ କେ ବାଣ ପ୍ରହାର ସେ ନିଷ୍ଠୁର ମାର ରେ
ପାଞ୍ଚ ଦୁନେ ଦିଗ ଜାର କରିବ ଅନ୍ଧାର ରେ ।।
(ଗୀତଗଣିତ – ଦରଦୀକବି)

[ ଅର୍ଥ – ପାଞ୍ଚ କେ ପାଞ୍ଚ, ପାଞ୍ଚ ଦୁନେ ଦଶ ।
ନିଷ୍ଠୁର କନ୍ଦର୍ପ ମୋ ସ୍ୱାମୀଙ୍କୁ ତାର ପାଞ୍ଚବାଣ ପ୍ରହାର
କରନ୍ତେ ତାଙ୍କୁ ଦଶଦିଗ ଅନ୍ଧକାରମୟ ଦେଖାଯିବ । ]

ଚନ୍ଦ୍ର ଦର୍ଶନରେ ବିରହିଣୀର ଖେଦବୃଦ୍ଧି:—
ଚନ୍ଦ୍ରୋଦୟେ ଦୃଶ୍ୟ ତିମିରମସ୍ୟାଦିବାପେତଧୈର୍ଯ୍ୟା, କମଲମସ୍ୟମିବ
ହ୍ରିୟତେ ହୃଦୟମ୍, କୁମୁଦମସ୍ୟ ଇବ ବିଜୃମ୍ଭତେ ମକରକେତନଃ,
ଚନ୍ଦ୍ରକାନ୍ତମସ୍ୟମିବ ପ୍ରସ୍ରବତ ନୟନଯୁଗଳମ୍, ଉଦଧିଜଳମସ୍ୟାଜୀବ
ପ୍ରବର୍ଦ୍ଧନ୍ତେ ଶ୍ୱସିତାନି, ଚକ୍ରବାକମସ୍ୟା ଇବ ବିଘଟନ୍ତେ ମନୋରଥାଃ,

ଶୀତଜ୍ୱରାର୍ତ୍ତେରେବ   ମଣିକୁଟ୍ଟିମୋଦରଫଟାନ୍ତସ୍ୟ   ରୂପ ରକରଣ-
ମଣ୍ଡଳସ୍ୟୋ ପରି  ବେପଥୁଲୁଳିତତରଳାଙ୍ଗୁଳୀନିକରଂ କରଯୁଗଳଂ
ପ୍ରସାରୟନ୍ତୀ ଶଶିସନ୍ତାପମନକ୍ଷରଂ କଥୟତ ।

(କାଦମ୍ବରୀ, ଉତ୍ତରଭାଗ—ଭୂଷଣ ଭଟ୍ଟ)

କୃତଧବଳିମଭେଦୈଃ କୁଙ୍କୁମେନେବ କିଞ୍ଚି—
ନ୍ମଳୟରୁହରଜୋଭିର୍ଭୂଷୟନ୍ ପଶ୍ଚିମାଶାମ୍ ।
ହିମରୁଚିରରୁଣିମା ରାଜତେ ରଜ୍ୟମାନୈ—
ର୍ଜରଠକମଳକନ୍ଦଚ୍ଛେଦଗୌରୈର୍ମୟୂଖୈଃ ॥

(ଶିଶୁପାଳ ବଧ—ମାଘ)

ସ୍ୱୈରଂ କୈରବକୋରକାନ୍ ବିଦଳୟନ୍ ଯୂନାଂ ମନଃ ଖେଳୟ—
ନ୍ନମ୍ଭୋଜନି ନିମୀଳୟନ୍ ମୃଗଦୃଶାଂ ମାନଂ ସମୁନ୍ମୂଳୟନ୍ ।
ଜ୍ୟୋତ୍ସ୍ନାଂ କନ୍ଦଳୟନ୍ ଦିଶୋ ଧବଳୟନ୍ନମ୍ଭୋଧିମୁଦ୍ବେଳୟନ୍
କୋକାନାକୁଳୟନ୍ ତମୋ କବଳୟନ୍ ଇନ୍ଦୁଃ ସମୁଜ୍ଜୃମ୍ଭତେ ॥

(ସୁଭାଷିତରତ୍ନଭାଣ୍ଡାଗାର)

ନନ୍ଦଳନ ଏବେ ଚନ୍ଦ୍ର ପବନ
ଫାନ୍ଦଳନ ତାହା ନ କର ଆନ
କାନ୍ଦଳନ ନବଘନକୁ ବୃନ୍ଦି
ବନ୍ଧଳନ ତମାଳକୁ କି କନ୍ଧ
ଛନ୍ଦଳନ ବାହୁବଲ୍ଲୀ
କୁନ୍ଦଳନ କୁଚ          ସମ୍ପୂର୍ଣ୍ଣ ଶୋକରେ
ସନ୍ଧଳନ ଦୃଷ୍ଟି ସ୍ଥଳ ॥

(ଯୁଗଳରସାମୃତଲହରୀ—କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା)

ପ୍ରବେଶ ହୋଇଲା ଆସି ପ୍ରଦୋଷ କାଳ
ଶଶିକଳା ଦିଶିଲା ଗଗନମଣ୍ଡଳ ।
ମାନବନ୍ତୀମାନ ଗଜରାଜ ଅଙ୍କୁଶ
ତାରାଗଣ ପଦ୍ମବନ ବିନୋଦ ହଂସ ।

ସଯୋଗିଜୀ ରସରେଖା ରସିକ ପ୍ରାଣ
ବିଯୋଗିଜୀ ହୃଦସ୍ତ୍ୱକୁ କରୁଥି ଜାଣ ।।
(ରୁକ୍ମଣୀ ଭଣ୍ଡ – କାର୍ତ୍ତିକ ଦାସ)

ଏଇ ଜ୍ୟୋତ୍ସ୍ନାରାତେ ଜାଗେ ଆମର ପ୍ରାଣ
ପାଶେ ତୋମାର ହବେ କି ଆଜ ସ୍ଥାନ ।।
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

ଜ୍ୟୋତ୍ସ୍ନାପୁଲକିତ ଏଇ ଯାମିନୀର ଏ ହେନ ସମସ୍ତ
ବିରହବେଦନା ଯେ ଗୋ ତଳେକ ଅସହ ମନେ ହସ୍ତ
ଏ ଦୁଃଖ କାହିନୀ ଆମି ସୁହୃଦେଓ ଶୁନାତେ ଅକ୍ଷମ
ଏକି ଗୋ ଦୁଃସହ ଜ୍ୱାଲ ଅନ୍ତରରେ ଯନ୍ତ୍ରଣା ନର୍ମମ ।।
(ଓମାର ଖାୟାମ କବିତା – ନରେନ୍ଦ୍ର ଦେବ

ସୁଲକ୍ଷଣା ସତୀନାରୀକାର ପ୍ରୀତି ଜନ୍ମଜନ୍ମାନ୍ତର ଓ ଦାମ୍ପତ୍ୟଜୀବନର ସାର୍ଥକତା:—

ଯା ଦମ୍ପତୀ ସୁମନସା ସୁନୁତ ଆ ଚ ଧାବତ
ଦେବାସୋ ନିତ୍ୟସ୍ୟା ଶିରା
ସମଞ୍ଜନ୍ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ
ସମାତରିଶ୍ୱା ସଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ
(ଋଗ୍ ବେଦ)

[ଅର୍ଥ= ଯେଉଁ ଦମ୍ପତି ଏକ ଚିତ୍ତରେ ଯଜ୍ଞ ସମ୍ପାଦନ କରି ସ୍ୱୀୟ-କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅନ୍ତି, ସେମାନେ ମାନବଜୀବନରେ ଦେବତ୍ୱ ଲାଭ କରନ୍ତି । ହେ ପ୍ରଭୋ ! ଆମ ଦୁହିଁଙ୍କ ଆତ୍ମା ଦୁହିଙ୍କୁ ଅଭିନ୍ନ ରଖନ୍ତୁ । ଆମ୍ଭ ଦୁହିଁଙ୍କର ଚିତ୍ତ ଜଳଧାରା ପରି ଅବିଭକ୍ତ ରହୁ ଓ ଉଭୟେ ଉଭୟଙ୍କର ମଙ୍ଗଳକାରୀ ଓ ଉପଦେଷ୍ଟା ହେଉଁ । ]

ଅନ୍ୟୋନ୍ୟସ୍ୟାବ୍ୟଭିଚାରୋ
ଭବେଦାମରଣାନ୍ତିକଃ
ଏଷ ଧର୍ମଃ ସମାସେନ
ଜ୍ଞେୟଃ ସ୍ତ୍ରୀ ପୁଂସୟୋ ପରଃ ।।
( ମନୁସ୍ମୃତି )

ସତୀ ଚ ଯୋଷିତ୍ ପ୍ରକୃତିଃ ସୁନିଶ୍ଚଳା
ପୁମାଂସମଭ୍ୟେତି ଭବାନ୍ତରେଷ୍ୱପି ॥
(ଶିଶୁ ପାଳବଧ – ମାଘ)

ବିରହିଣୀ ପ୍ରିୟା କଥା ମନେ ପକାଇ ବିଦେଶୀ ବିରହୀର ଆତ୍ମୋକ୍ତିକାର:—

ଦଳତି ହୃଦୟଂ ଶୋକୋଦ୍ ବେଗାଦ୍ ଦ୍ୱିଧା ନ ତୁ ଭିଦ୍ୟତେ
ବହତି ବିକଳଃ କାୟୋ ମୋହଂ ନ ମୁଞ୍ଚତି ଚେତନାମ୍ ।
ଜ୍ୱଳୟତି ତନୂମନ୍ତର୍ଦାହଃ କରୋତି ନ ଭସ୍ମସାତ୍
ପ୍ରହରତି ବିଧିର୍ମର୍ମଚ୍ଛେଦୀ ନ କୃନ୍ତତି ଜୀବିତମ୍ ॥
( ଉତ୍ତରରାମଚରିତ—ଭବଭୂତି)

ହା ହା ଦେବି ! ସ୍ଫୁଟତି ହୃଦୟଂ ଧ୍ୱଂସତେ ଦେହବନ୍ଧଃ
ଶୂନ୍ୟଂ ମନ୍ୟେ ଜଗଦବିରଳଂ ଜ୍ୱାଳମନ୍ତର୍ଜ୍ୱଳାମି ।
ସୀଦନ୍ନନ୍ଧେ ତମସି ବିଧୁରୋ ମଜ୍ଜତୀବାନ୍ତରାତ୍ମା
ବିଷ୍ୱଙ୍ମୋହଃ ସ୍ଥଗୟତି କଥଂ ମନ୍ଦଭାଗ୍ୟଃ କରୋମି ॥
( ଉତ୍ତରରାମଚରିତ – ଭବଭୂତି)

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ ॥
(ଗୀତଗୋବିନ୍ଦ – ଜୟଦେବ)

ପ୍ରିୟା ସହିତ ବିହାର     ନାହିଁ, ବିଚ୍ଛେଦ ଯାହାର
ଧିକ ଜୀବନ ତାହାର ହେଉ ସଂହାର
ଓଷ୍ଠେ ସୁଧା ସୁଦେହାର     ଆଉଁ ଅମରେ ନାହାର
କର କରନ୍ତି ଆହାର ତାଙ୍କ ଜିହ୍ୱାର
ତାଙ୍କ ଗୀତ ସୃଷ୍ଟି ବାହାର
ବାଳା ବାହୁ ଆଉଁ ଗଳେ ବହନ୍ତି ହାର ॥
( ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷ୍ଣା ପୁଣି ହୁଏ ବିଧୁର ।

ପୁଣି ଦଇବେ ହୋଇଲେ ଦମ୍ପତି
ପଦତଳେ ମିଳେ ଇନ୍ଦ୍ର ସମ୍ପତ୍ତି !
ପଶୁମାନେ ବଶ ହେଲେ ଏ ରସେ
ଯେହ୍ନ ପାଷାଣ ସେ ଏଥି ନ ରସେ ॥
(ରସିକହାରାବଳୀ—ଉପେନ୍ଦ୍ର ଭଞ୍ଜ)

ରଜାଙ୍କୁ ହେବାର ରାଜ୍ୟର ଭ୍ରଷ୍ଟ
ଯୁବାଙ୍କୁ ହେବାର ପତ୍ନୀକଷ୍ଟ
ବୋଲେ ଉପଇନ୍ଦ୍ର ଭଞ୍ଜ ବୀରବର
ଏଥୁଁ ବଳି ଆନ ନାହିଁ କଷ୍ଟ ॥
(ରସିକହାରାବଳୀ – ଉପେନ୍ଦ୍ର ଭଞ୍ଜ)

ଛିଡ଼ଥିଲେ ନରପତି ଶୋଭାପାଇ ରାତି ଥିଲେ ଚନ୍ଦ୍ର ଉଜ୍ଜ୍ୱଳ
ପଦ୍ମଥିଲେ ସରୋବର ମଞ୍ଜୁଳ
ଯେଉଁ ଯେହ୍ନ ମତି ଯୁବତୀ କତିରେ ଯୁବା ଜନର ମଙ୍ଗଳ ରେ
ସୁନ୍ଦର ! ଲଭ ନାହିଁ ଯେ ବଳ୍ଲଭ ପୁରସ
ମନ୍ଦା ସମ୍ପତ୍ତି ଥାଇ ହେବ କସ
ନୟନ ନ ଥାଇ ଦେବଦରଶନ ଭଳି ପ୍ରାପ୍ତ ଉପହାସ ॥
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

କ ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦେ ସେ
ପ୍ରିୟାସ୍ନାନଠାରୁ ପାପୀ ନାହିଁ ମର୍ତ୍ତ୍ୟଦେଶେ ॥
(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ଯାହା ହେଲା ତୋର ମୋର ବିଚ୍ଛେଦ
ନୋହିଲା କାହିଁକି ମୋ ଶିରଚ୍ଛେଦ ॥
(ଲାବଣ୍ୟବତୀ – ଉପେନ୍ଦ୍ର ଭଞ୍ଜ)

ମନ୍ଦ ଶବଦେ ସ୍ତବଧେ ମନ୍ଦେମନ୍ଦେ ସ୍ନାନକୁ ବଧୂ ବାହାର
ପିଣ୍ଡାରେ ଥିଲା ପଥିକ ଭାବେ ମନ୍ଦି ହେବାରୁ ହୃଦ ତାହାର
ମୁଁ ମଲି; କେଉଁ ଦୁଃଖରେ ବିଦେଶ ଭଲି
ପ୍ରିୟ ଏ ଛବିକି ନ ଦେଖିଲି । ତାକୁ ମନମଥଶରେ ଦେଲି ॥
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—ଉପେନ୍ଦ୍ର ଭଞ୍ଜ)

ଯାମିନୀରେ ଚନ୍ଦ୍ରକିରଣେ ଅମ୍ବର ହସିଲେ ଲାଜରେ ବୁଡ଼ି,
ଚକୁଶ୍ରି ଏଡ଼େ ରୁ ରୁଷନ୍ତେ ମୋ ନେତ୍ର ପଦ୍ମକର ଯେଉଁ ଯୋଡ଼ି ।
ଚମ୍ପାଗୋରୀ ରତି ରଚିଲେ ନ ସହି କଟିକି ଉରୁରେ ଭିଡ଼ି,
ଯୁପି ଅଧର ଅଧରେ ମୋ ତନୁରେ ଓଦାବାସ ପ୍ରାୟେ ଜଡ଼ି ।
ଚକ୍ଷୁ ପିଗ୍ଧୁଡ଼ିବା ନ ଆଉ ତୋହର ଲବେ ମୋ ପାଶ ନ ଛାଡ଼ି,
ଚନ୍ଦ୍ର କହେ ଉପଇନ୍ଦ୍ର ମଙ୍ଗରାଜ ବଦେଷ ପୁଷାର୍ଥ ଯୋଡ଼ି ॥
(ଚମ୍ପୁ — ଉପେନ୍ଦ୍ର ଭଞ୍ଜ)

କି କଲି ବିଧି ମୋତେ ଚାଲୁ କି କଲି
କପାଳେ ଏହି ଦଶା ଲେଖି ସେ ଥିଲି
ଆହା କନକଗୋରୀ
କରୀବରଗମନା ମୋ ପ୍ରାଣେଶ୍ୱରୀ
କଷ୍ଟ ତ ଅନୁଭବି ନାହିଁ କିଶୋରୀ
କମ୍ପା ଅଇଲି ଛାଡ଼ି ବିଦେଶ କରି ॥
(ରସକଲ୍ଲୋଳ — ଦୀନକୃଷ୍ଣ ଦାସ)

ଯେ ତପସ୍ୱୀରେ ତପ ଚଣ ପଞ୍ଚାଗ୍ନି ତପଣରେ ବା ହୋଇଥାଏ ଲାଭ
ଯେ ସିନା ତରେନ୍ତି ରାଜ ରାଜବାଷ୍ଠୀକୁ ରାଜ କରାଇ କରେ ମଦନାଳା
ପ୍ରାଣପ୍ରିୟ !
ଆଜାବ ଯାର ଚନ୍ଦ୍ରମୁଖୀ
ତା ଜାବ ସିନା ଜାବେ ଲେଖି
ପାଜା ଦେସର ତାର "ଆଜାଦେଶ୍ୱରୀ" ଗର ଯା ଜଭେ ଧାତା ନାହିଁ ଲେଖି ॥
(ଚନ୍ଦ୍ରକଳା — କବିସୂର୍ଯ୍ୟ ବଳଦେବ ରଥ)

କାନ୍ତା ବିନା କାନ୍ତ ପ୍ରାଣ ସ୍ୱଭାବେ ବିକଳ
ବିକଳ ଜୀବନ ମଣେ ଜଗତେ ବିଫଳ ॥
(ତପସ୍ୱିନୀ — ଗଙ୍ଗାଧର ମେହେର)

ବାଣିଜ୍ୟକାରେ ବାଣିଜ୍ୟ ଛାଡ଼ିଲେ
ପାଣିଜ ପାଣି ଭିତରେ ବୁଡ଼ିଲେ ।

ତରଣୀବିନା ନଦୀ ନୋହେ ପାର
ତରୁଣୀ ବିନା ଯୁବାକାଳ ପର ॥
(କୃଷ୍ଣବିଳାସ — ଚକ୍ରପାଣି ପଟ୍ଟନାୟକ)

ଫାଟି ଯାଉଛି ହୃଦୟ ଶରୀରର ବନ୍ଧନ
ଛିଣ୍ଡି ଯାଉଅଛି ସବେଗେ, ଶୂନ୍ୟ ଦିଶେ ଭୁବନ ।
ଅନ୍ତର ଜଳୁଛି ମୋହର ଅବିରତ ଜ୍ୱାଳାରେ
ଅବସନ୍ନ ଆସି ସ ଉଛି ବୁଡି ଶୋକ-ଅନ୍ଧାରେ ।
ଦଶଦିଗ ମୋହେ ଆଚ୍ଛନ୍ନ କିଛି ଦିଶୁ ତ ନାହିଁ
କି କରିବ ମନ୍ଦଭାଗ୍ୟ ମୁଁ ବସିଅଛି କାନ୍ଦାଇ ॥
(ଉତ୍ତର ରାମ ଚରିତ — ମଧୁସୂଦନ ରାଓ)

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମୋତେ ସ୍ୱପନ
କଏ ଦେବ ନେବ ମୋ ପ୍ରେମ-ପୀୟୂଷ
ନୀରବ ହାହାକାରେ ଯିବ ଆୟୁଷ ॥
(ବନ୍ଧୁମିଳନ ଚିତ୍ର — ଉତ୍କଳମଣି ଗୋପବନ୍ଧୁ)

ଓ ଗୋ ପ୍ରିୟେ ! ତୋମାର ବିରହେ
ନାହିଁ ଦହେ
ଯାହାର ହୃଦୟ,
କୋଥାୟ ଆଛେ ହେନ ନରଦୟ !
(ଓମାରଖାୟାମ କବିତା — ନରେନ୍ଦ୍ର ଦେବ)

ଇଂରାଜୀ କବିତାମାନଙ୍କରେ ପ୍ରେମର ମହତ୍ତ୍ୱ:—

O Poworful love, that in some respeots
makes a beast a man, in some other
a man a beast.
(Willam Shakespeare)

Sweet to the miser are his glittering heaps
Sweet to the father is his first born's birth

But sweet still than this
Than these, than all
Is first and passionate love- i t stands alone.
(Lord Byron)

But of all delightful sounds
Of evening or of morn;
The sweetest is the voice of love
That welcomes his return.
(Robert Southey)

Ah love, let us be true
To one another; for the world which seems
To lie before us like a land or dream.
(Dover Beach – Mathew Arnold)

ମଣିବ ତାରକ ସମାନ କୁନ୍ଦକୁ କୁନ୍ଦ କୁ କୁନ୍ଦକୁ ହୋଇବ
ମଦାଳସୀ କୁନ୍ଦ ସଙ୍ଗେ କ ମୁକୁନ୍ଦ ମୁକୁନ୍ଦ ମୁକୁନ୍ଦ ହୋଇବ
କୋକିଳ, ମହାଘୋର ଭସ୍ମ କରିବ
ମନେ ଚିନ୍ତୁଥିବ କାନନ କାନନ କାନନ ସମାନ ମଣିବ ।୨୫।

ଅନ୍ୱୟ—ରେ କୋକିଳ, ସେ କୁନ୍ଦକୁ (ବିଷ୍ଣୁଙ୍କୁ) ତାରକ (ଉଦ୍ଧାର କର୍ତ୍ତା) ସମାନ ମନେ କରିବ । କୁନ୍ଦ (କୁନ୍ଦ ଫୁଲ) ତାକୁ କୁନ୍ଦକୁ (ତ୍ରିଶୂଳ) ପରି କୁ (ଖରାପ) ହେବ । ମଦାଳସୀର କୁନ୍ଦ (ପଦ୍ମ) ମୁଖ ସଙ୍ଗେ ଯେପରି ମୁକୁନ୍ଦ (ପାରଦ) ପରି ସ୍ୱଚ୍ଛ । ସେ ମୋର ମୁକୁନ୍ଦ (ମୁକ୍ତିଦାୟିନୀ) ଓ ମୁକୁନ୍ଦ (କୁବେର ନିଧି) ଅଟେ । ସେ ମହାଭୟରେ ଥିବ । ସେ ମନେ ମନେ କାନନ (କ=ସୂର୍ଯ୍ୟ+ଆନନ ଅର୍ଥାତ୍ ଦିବସ) କାନନ (ଗୃହ)କୁ କାନନ (ବନ) ପରି ମଣୁଥିବ ।

ଅର୍ଥ—ରେ କୋକିଳ, ମେ ବିଷ୍ଣୁଙ୍କୁ ତାର ଉଦ୍ଧାରକର୍ତ୍ତା ବୋଲି ମନେ କରିବ । କୁନ୍ଦଫୁଲକୁ ତ୍ରିଶୂଳ ପରି ଖରାପ ମଣିବ । ମଦାଳସୀର

ପଦ୍ମମୁଖ ପାରଦ ପରି ସ୍ୱଚ୍ଛ ଅଟେ । ସେ ମୋର ମୃତ୍ୟୁଦାୟିନୀ ଓ ଅମୂଲ୍ୟନିଧି ଅଟେ । ସେ ଘୋର ଭୟରେ ଦିବସକୁ ମନେ ମନେ ଚିନ୍ତାକରି (କାରଣ ଦିନରେ କାମତାପ ଅପେକ୍ଷାକୃତ କମ୍ ଥାଏ) ତାର ଘରକୁ ବନ ପରି ମଣୁଥିବ ।

ନାସ୍ତି ମୃତ୍ୟୁଦାୟିନୀ ଓ କାମସନ୍ତାପରୁ ରକ୍ଷାକର୍ତ୍ତ୍ରୀ:—

କାହ୍ନାକୁ ବୋଲନ୍ତି ଆରେ କୁନ୍ଦଦନ୍ତୀ ତୁ ମୋର ପଞ୍ଚଭୂତ ପ୍ରାଣ
କାମ ପଞ୍ଚବାଣ ମୁଖୁଁ ପରିତ୍ରାଣ କରିବାକୁ ତୁହି କାରଣ
କିଶୋରି ! କାଲୁ ତୁ ଏବେ ସବୁଁ ବାଧା
କାମ ମଣ୍ଡଳାର୍କ ମଣ୍ଡନ କରି ଯେ ପାରିଲୁ ତାର ସବୁ ସୁଧା ।
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

ଯୁବତୀ କଦମ୍ବ ରଜା ଅବଲମ୍ବ ହୋଇଲ୍ ଯେବେ ଜନ୍ଦର ରେ
ମୁଖକୁ ସନ୍ନଦ୍ଧ ହେଉ ଅଣ ଜୁଷ୍ଟ ହୋଇ ପଟନ୍ତୁ ପଞ୍ଚଶର ରେ ॥
(କିଶୋରଚନ୍ଦ୍ର ନନ ଚମ୍ପୂ—କବିସୂର୍ଯ୍ୟ ବଳଦେବ ରଥ)

ଅଙ୍ଗନା ଅନା ଅନା ବରି ଦାସ ନାରିନା
ଯେନ ବାରେ ସୁମନା ମନା
ଅସ୍ତ୍ରେ ନବୀନା ବିନା ଦୋଷେ ହେବ ନା
ବିନାଶ ମୁଁ ହେଳି ସ୍ୱବନା ବନା
ପ୍ରାଣବନ୍ଧୁ !
ଅପାଙ୍ଗ ରଙ୍ଗେ ଅନା ଅନା
ଅନଙ୍ଗ କରେ ଚେନା ଚେନା
ଅବ୍ଜହାସି ! ନାଗି ନା କି ସୁଖ ମନା ମନା —
କୁଲେ ସ୍ୱପନା ନା ନା ନା ନା ॥
(ଅମ୍ବିକାବିଳାସ—ବଳଭଦ୍ର ଭଞ୍ଜଦେବ)

There has fallen a splendid tear,
From the passion flower at the gate,
She is coming, my dove, my dear;
She is coming, my life, my fate.
(Maud--Alfred Lord Tennyson)

ଯୋଷାମଣି ମୀନକେତନ କେତନ କେତନ କେତନ ରସାଇ
ଯେବେ ଗୃହିଁଦେବ କେତନ କେତନ କେତନ ତେବେ ମୋହଯାଇ
କୋକଳ, ଯତନେ ତାର ସଖୀଗଣ
ପୁବଣ୍ଟ ଶରୀରେ କାଞ୍ଚନ କାଞ୍ଚନ କାଞ୍ଚନ କରିବେ ଲେପନ ।୨୬।

**ଅନ୍ୱୟ—ରେ କୋକଳ, ମୋ ଯୋଷାମଣି ମୀନକେତନ (କନ୍ଦର୍ପ) କେତନ (ଶରୀର) କେତନ (କାର୍ଯ୍ୟ) ଦେଖି ତାକୁ କେତନ (ନିମନ୍ତ୍ରଣ) କରିଥିବ । ସେ କେତନ (ନାଗେଶ୍ୱର ଫୁଲ) କେତନ (ସ୍ଥାନ) ଓ କେତନ (ଚହ୍ନ)କୁ ଦେଖି ମୋହ ଯିବ । ତାର ସଖୀମାନେ ଯତନରେ ସେ ସୁବଣ୍ଟର ଶରୀରରେ କାଞ୍ଚନ (ପଦ୍ମକେଶର) କାଞ୍ଚନ (ନାଗକେଶର) ଓ କାଞ୍ଚନ (ଚମ୍ପା) ଚଢ଼ାଉଥିବେ ।**

**ଅର୍ଥ—ରେ କୋକଳ, ମୋ ନାରୀମଣି କନ୍ଦର୍ପର ଅଙ୍ଗକୁ ସର୍ବଦା ଭାବ ଭାବ (ଆଖି ଆଗରେ କନ୍ଦର୍ପର ସ୍ୱରୂପ) ଓ ତାର କାର୍ଯ୍ୟକଳାପ (ବାଣ ପ୍ରହାର) ଦେଖି ତା ପ୍ରତି ବଶୀଭୂତା ହୋଇ ତାକୁ ଆରାଧନା କରୁଥିବ । ସେ ନାଗେଶ୍ୱର ଫୁଲ; କେଳିସ୍ଥାନ ଓ ତାର ଅଙ୍ଗରେ ଥିବା ସମ୍ଭୋଗ ଚହ୍ନମାନ (ଚୁମ୍ବନ ଓ ନଖକ୍ଷତ ଆଦି)କୁ ଦେଖି ମୋହ ଯାଉଥିବ । ତାର ସଖୀମାନେ ତାର ଅଙ୍ଗରେ ପଦ୍ମକେଶର; ନାଗକେଶର ଓ ଚମ୍ପାଫୁଲମାନ ଚଢ଼ାଉଥିବେ ।**

ବିରହିଣୀର କନ୍ଦର୍ପ-ଆରାଧନା:—

ତୃପ୍ତି କରିବାକୁ ଜୀବନଧନକୁ ମଦନଦ୍ୱିଜ ଗୃହଦ୍ୱାରେ
ସୁମନେ ନେତ୍ରପାତ୍ରୀରେ ବାରି ଭରି ସୁମୁଖୀ ବସିଛି ଦେବାରେ
ସାଧୁ କୃପଣ, ସନ୍ଦେହତା ତାହା କିବାରେ
ସ୍ୱସ୍ତିକପୁର ବାରି ପରି ପରତେ ହେ ଶିବ ବୋଲି ବୋଲେ ବାରେ ॥
(ସୁଭଦ୍ରାପରିଣୟ – ଉପେନ୍ଦ୍ରଭଞ୍ଜ)

ନାରୀଅଙ୍ଗରେ ସମ୍ଭୋଗ ଚହ୍ନ ବର୍ଣ୍ଣନା:—

ଆଶ୍ଳେଷଚୁମ୍ବନନଖକ୍ଷତକାମବୋଧ-
ଶୀଘ୍ରତ୍ୱମୈଥୁନମନଲ୍ପସୁଖପ୍ରବୋଧମ୍ ।

ପ୍ରୀତିପ୍ରତୋଽପି ରସଭବନମେବ କାର୍ଯ୍ୟ-
ମେବଂ ହି ତାନ୍ତ୍ରଚରୁଷଃ ସୁଚରଂ ରମନ୍ତେ ।
(ନାଟ୍ୟଶାସ୍ତ୍ର—ଭରତ)

ବିପକ୍ଷଚିତ୍ତୋନ୍ମଥନାନ୍ନଖବ୍ରଣା-
ସ୍ତିରୋହିତା ବିଭ୍ରମମଣ୍ଡଲେନ ଯେ ।
ହୃତସ୍ୟ ଶେଷାଽିବ କୁଙ୍କୁମସ୍ୟ ତାନ୍
ବିକତ୍ଥନାସ୍ତାନ୍ଦଧୁରନ୍ୟଥା ସ୍ତ୍ରିୟଃ ॥
(କିରାତାର୍ଜୁନୀୟ—ଭାରବି)

କ୍ଷତୈରସଂଚେତିତ-ଦନ୍ତ-ଲବ୍ଧୈଃ
ସମ୍ଭୋଗ-କାଲେଽବଗତୈ ପ୍ରଭାତେ ।
ଅଶଙ୍କିତାଽନ୍ୟୋନ୍ୟକୃତଂ ବ୍ୟଲୀକଂ
ବିୟୋଗ-ବାହ୍ୟୋଽପି ଜନୋଽଭିସଗାତ୍ ॥
(ଭଟ୍ଟିକାବ୍ୟ, ୧୧ଶ ସର୍ଗ)

କୁଚକଲସଯୁଗାନ୍ତର୍ମାମକୀନଂ ନଖାଙ୍କଂ
ସପୁଲକତନୁ ମନ୍ଦଂ ମନ୍ଦମାଲୋକମାନା ।
ବିନିହିତବଦନଂ ମାଂ ବୀକ୍ଷ୍ୟ ବାଲା ଗବାକ୍ଷେ
ଚକିତନତନତାଙ୍ଗୀ ସଦ୍ମ ସଦ୍ୟୋ ବିବେଶ ॥
ଭାମିନୀବିଳାସ – ପଣ୍ଡିତରାଜ ଜଗନ୍ନାଥ)

କରଜକ୍ଷତ ଦଶନଘାତ କୁଚମଣ୍ଡଳେ ଦିଶେ
କୀରଦଂଶନ ବିମ୍ବସମାନ ଅଧର ପରକାଶେ ।
କଟି ବସନ ପିନ୍ଧା ବିଧାନ ଶିଥିଳ ହୋଇ ଖସେ
କେଶର ଭଙ୍ଗେ କୁରଙ୍ଗୀ ପ୍ରାଙ୍ଗେ ବିନ୍ଦୁ ହୁଚ ଚନ୍ଦ୍ରପାଶେ ॥
(ରସକଲ୍ଲୋଳ – ଦୀନକୃଷ୍ଣ ଦାସ

କାମର ମୂର୍ଚ୍ଛନା ଆଦି ଅବସ୍ଥା:—
ଅଙ୍ଗେ ସ୍ୱେଦଃ ଶ୍ଲଥତ୍ୱଂ ଚ
କେଶବସ୍ତ୍ରାଦି ସଙ୍ଗତାଃ ।

ଜାତେ ଚ୍ୟୁଁତସୁଖେ ନାଯ୍ୟା
ସ୍ତରମେଚ୍ଛା ନ ଜାୟତେ ॥
(ନାଟ୍ୟଶାସ୍ତ୍ର—ଭରତ)

ମୂର୍ଚ୍ଛନାମୀଲନଂ ଗୃଷ୍ଟଶୋଷ୍ଟ୍ୟୁତକାଳସ୍ୟ ସୂଚକମ୍ ॥
(ନାଟ୍ୟଶାସ୍ତ୍ର – ଭରତ)

ମୂର୍ଚ୍ଛନାମୀଲନଂ ଗୃଷ୍ଟଶୋଷ୍ଟ୍ୟୁତକାଳସ୍ୟ ଲକ୍ଷଣମ୍ ॥
(ରତିରହସ୍ୟ)

ସ୍ତରହ୍ରଣୀର ଉପଶ୍ଚର:—

ଉପଚର୍ଚ୍ଚର ଚରଂ ମୃଦୁଶୀତଳୈ—
ର୍ଜଳଜନାଳମୃଣାଳଜଳାଦଭିଃ ।
ପ୍ରିୟସଖୀନିବହ୍ନଃ ସ ତଥାକ୍ରମା—
ଦସୁମବାପ ଯଥା ଲଘୁଚେତନାମ୍ ॥
(ନୈଷଧଚରିତ—ଶ୍ରୀହର୍ଷ)

ରମଣୀ ବକମ ବକମ ବକମ ଗୁହିଁ ତା ଭ୍ରମେ ହେଉଥିବ
ରଞ୍ଜିନୀ କାହାର ବକମ ବକମ ବକମ ଭବ ତା ତେଜିବ
କୋକିଳ, ରସା ଚରିବ ନଖେ ବସି
ସାମ ଅନାଇଲେ କୁସୁମ କୁସୁମ କୁସୁମରେ କର ନବେଶି ।୧୭।

ଅନ୍ବୟ — ରେ କୋକିଳ, ମୋ ରମଣୀ ବକମ (ଶ୍ରେଷ୍ଠ) ବକମ (ବିଷ୍ଣୁ) ବକମ (ଚରଣ)କୁ ଦେଖି ଭ୍ରମ ହେଉଥିବ । ରଞ୍ଜିନୀ କାହାର ବକମ (ଗତି) ବକମ (ସାହସ) ଓ ବକମ (ବେଗ) ଭବ ତାହା ତେଜିବ । ସେ ନଖରେ ଭୂମି ବିଦାରୁଥିବ । ସାମ (ତମାଳ)କୁ ଗୁହିଁଲେ ସେ କୁସୁମ (ଚକ୍ଷୁପୀଡ଼ା) କୁସୁମ (ଫୁଲ) ଓ (ଫଳ)ରେ କର ନିବେଶି ବସିଥିବ ।

ଅର୍ଥ—ରେ କୋକିଳ; ମୋ ରମଣୀଶ୍ରେଷ୍ଠା ବିଷ୍ଣୁଙ୍କୁ (ଏଠାରେ ମୋ.ର ପ୍ରତିମୂର୍ତ୍ତି) ଓ ପଦଚିହ୍ନକୁ ଦେଖି ଭ୍ରମ ହେଉଥିବ । ସେ ମନରଞ୍ଜନା ମୋର ବିରହରେ ଅନ୍ୟ କାହାର ତା ପ୍ରତି ଗମନ, ସାହସ ଓ ଆକ୍ରମଣ

(ଏଠାରେ ପ୍ରେମଜନକ ଆଲିଙ୍ଗନାଦି)କୁ ସ୍ୱବ ସେ ଭ୍ରମ ତ୍ୟାଗ କରିବ । ସେ ନଖରେ ଭୂମି ବିଦାରୁଥିବ । ତମାଳବୃକ୍ଷକୁ ଦେଖିଲେ (ଶ୍ୟାମଳ ବର୍ଣ୍ଣ ହେତୁ) ଚକ୍ଷୁପୀଡ଼ା ଅନୁଭବ କରି ଫୁଲ (ଏଠାରେ ମଣ୍ଡି ଫୁଲକୁ ଧରି ମଲ୍ଲ ବୋଲି କହୁ) ଓ ଫଳ (ଏଠାରେ ନାରିକେଳ ସଦୃଶ କୁଚ)ରେ ହସ୍ତ ଦେଇ ବସିଥିବ ।

ରାଧା ରମଣୀ ଶ୍ରେଷ୍ଠା:—

ତନ୍ୱୀ ଶ୍ୟାମା ଶିଖରିଦଶନା ପକ୍ୱବିମ୍ବାଧରୋଷ୍ଠୀ
ମଧ୍ୟେ କ୍ଷାମା ଚକିତହରିଣୀପ୍ରେକ୍ଷଣା ନିମ୍ନନାଭିଃ ।
ଶ୍ରୋଣୀଭାରାଦଲସଗମନା ସ୍ତୋକନମ୍ରା ସ୍ତନାଭ୍ୟାଂ
ଯା ତତ୍ର ସ୍ୟାଦ୍ ଯୁବତିବିଷୟେ ସୃଷ୍ଟିରାଦ୍ୟେବ ଧାତୁଃ ॥
(ମେଘଦୂତ — କାଳିଦାସ)

ଅଦ୍ୟାପି ତାଂ କ୍ଷିତିତଲେ ବରକାମିନୀନାମ୍
ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାମ୍ ।
ସଂସାର-ନାଟକ ରସୋତ୍ତମ-ପାନପାତ୍ରୀଂ
କାନ୍ତାଂ ସ୍ମରାମି କୁସୁମାୟୁଧ-ବାଣଖିନ୍ନାମ୍ ॥
(ଚୌରପଞ୍ଚାଶିକା — ବିଲ୍ହଣ)

ଅବନୀ ମଣ୍ଡଳେ ଯେତେ ଯେତେ ତରୁଣୀ
ସର୍ବାଙ୍ଗ ସୁନ୍ଦର ସେ ଯେ ନାରୀ-ଅଗ୍ରଣୀ ।
ଯେତେବେଳେ କରେ କାମ ସୁନ୍ଦରୀ ଲେଖା
ଆଗ କରି କାଟଇ ମୋ ପ୍ରିୟାର ରେଖା ।
ଜଗତ ନାଟକ ରସେ ଅତି ରୁଚିର
ମଣିମୟପାତ୍ରୀ ଇଚ୍ଛା ଯୁବଜନଙ୍କର ॥
(ଇଚ୍ଛାବତୀ — ଧନଞ୍ଜୟ ଭଞ୍ଜ)

ରସାରେ ସାର ସୁରସ ସୁରସୀ
ସସାର ଶିଖ ସୁରସ-ସରସୀ ॥
(ଚିତ୍ରକାବ୍ୟ ବନ୍ଧୋଦୟ—ଉପେନ୍ଦ୍ର ଭଞ୍ଜ)

ନବସଙ୍ଗ ନାୟିକା କେଉଁ ପୁଂସ
ବସି ଭାବନା କରେ ନାଗପାଶ ।
ବରବରନା ସାରସ-ଗମନା
ମଞ୍ଜୁମଣ୍ଡନାକାଶ ସେ ସୁମନା ।
ଚନ୍ଦ୍ରବଦନା ସ୍ମେରକନ୍ଦଦଶନୀ
ଘନଶ୍ରୋଣୀ ଭ୍ରମରଦାସୀ ମାନନୀ ।
ଯେତେ କି ସୁନ୍ଦର ଯୌବନସରଣୀ
ରମଣୀଙ୍କ ରତ୍ନ ସାର ତରୁଣୀ ।।

(ଛାନ୍ଦକାବ୍ୟ ବନ୍ଧୋଦୟ — ଉପେନ୍ଦ୍ର ଭଞ୍ଜ)

ବାନ୍ଧବୀ ପଣ ମୋ ନାହିଁ ସୁନ୍ଦରୀ
ବାସେ ଦେହ ସଜ ସରୋଜ ପରି ।।

(ବୈଦେହୀଶ ବିଳାସ—ଉପେନ୍ଦ୍ର ଭଞ୍ଜ)

କଲି ଯାହା ଦର୍ଶନ ତାହା ଲକ୍ଷକ
କଳାଳେ ଅଛୁ ସେହ ବ୍ରହ୍ମାଣ୍ଡେ ଏକ ।
କଲି ନାହିଁ ଯାହାକୁ ସେ ବର୍ଣ୍ଣକ
କରେ ଭାବନା କେହ ଏ ଏଡ଼େ ଠିକ ।

(କଳାକଉତୁକ — ଉପେନ୍ଦ୍ର ଭଞ୍ଜ)

ଦଳ ଶୋଭା ଶୋଭା ଦଳ ଦଳ
ଚଳ ହେବ କି ତା କଳ କଳ
ଅଳକ ନ ମାନ ଦେଖିଛୁ ନୟନ
ପଦ୍ମମଣି କରେ ଅଳ ଅଳ
ମୃଗଦୃଷ୍ଟି,
ସ୍ୱର୍ଗୀୟ-ସୁଷମା କରେ ସୃଷ୍ଟି ।।

(ଇନ୍ଦୁରେଖା—ଗୋଲୋକଚନ୍ଦ୍ର ପ୍ରଧାନ)

ଭୁବନୈକ ପ୍ରଣୟୀକୁ ଚନ୍ଦ୍ରାକର ତାଙ୍କୁ ଲଭକରେ ଓ ପରସ୍ପର ପ୍ରୀତ:—
ଯୋ ଯଦଚ୍ଛତ ତସ୍ୟ ତତ୍ ।।

(କଠୋପନିଷଦ)

ଦୂରେ ଥିଲେ ପାଶେ ଅଛୁ ଥିବୁ ମନେ ଯେହ୍ନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।।
(ପ୍ରେମ ସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଗୁଡ଼ ତୋତେ ଯାଇ ଧନ ପାଶବ କି ମୁହିଁ
ଜ୍ୟୋଛନା ଗୁଡ଼ ଏ ଭବେ ବଧୂ କି ବୁଡ଼ଇ
ଯହିଁ ଆଅ ଗୁହ୍ୟ ବାଳା
ଦିବା ନିଶି ଦେଖୁଥିବି ମୁଁ ତୋହର ଲୀଳା ।।
(କୋଣାର୍କେ – ନୀଳକଣ୍ଠ ଦାସ)

ଯେତେ ଦୂରେ ଥିଲେ ମାନସ-ପଟଳେ
ଭାସିବ ତୁମର ଛବି
ପ୍ରଣୟ-ଡୋରରେ ବନ୍ଧା ଗୋ ଯେସନ
କମଳିନୀ ସହ ରବି ।।
(ମିଳନମାଧୁରୀ—ଦରଦୀ କବି)

ପ୍ରେମଜନିତ ଆକ୍ରମଣ ଅର୍ଥାତ୍ ଆଲିଙ୍ଗନ, ଚୁମ୍ବନ, ନଖକ୍ଷତ ଓ ନୀବୀମୋକ୍ଷ ଆଦି ରତିର ଅଷ୍ଟ ଲକ୍ଷଣ:—

ଆଶ୍ଲେଷଂ ପ୍ରଥମଂ କୁର୍ଯ୍ୟାତ୍, ଦ୍ୱିତୀୟଂ ଚୁମ୍ବନଂ ତଥା ।
ତୃତୀୟଂ ନଖଦାନଞ୍ଚ, ଦଂଷ୍ଟ୍ରାଘାତଂ ଚତୁର୍ଥକମ୍ ।।
ପଞ୍ଚମଂ କ୍ଷେପଣଂ ପ୍ରୋକ୍ତଂ, ଷଷ୍ଠଂ ପ୍ରହରଣଂ ତଥା ।
ସପ୍ତମଂ କଣ୍ଠଶବ୍ଦଶ୍ଚ, ବନ୍ଧାଖ୍ୟଂ ତ୍ୱଷ୍ଟମଂ ରତମ୍ ।।
(ପଞ୍ଚସାୟକ – କବିଶେଖର ଜ୍ୟୋତିରୀଶ୍ୱର)

ମୁହୁଶ୍ଚ ସ୍ୱଜନାଶ୍ଳେଷଃ ସୀତ୍କାରଶ୍ଚୈତଲକ୍ଷିତମ୍ ।
ହୁଙ୍କାରୋଚ୍ଛ୍ୱସିତଂ ନାର୍ଯ୍ୟା ବୀର୍ଯ୍ୟସାନ୍ନିଧ୍ୟସୂଚକମ୍ ।।
(ରତି ରହସ୍ୟ)

ଚୁମ୍ବନର ସ୍ଥାନ ନିରୂପଣ:—

କୁଚୌ ନେତ୍ରେ ଲଲାଟେ ଚ
ଚୁମ୍ବନଂ ପରିକୀର୍ତ୍ତିତମ୍ ।।

(କାମସୂତ୍ର—ବାତ୍ସ୍ୟାୟନ)

ନେତ୍ରେ କଣ୍ଠେ କପୋଳେ ଚ, ହୃଦ ପାର୍ଶ୍ୱଦ୍ୱୟେଽପି ଚ
ଗ୍ରୀବାୟାଂ ନାଭିଦେଶେ ଚ କାମୀ ଚୁମ୍ବତି କାମିନୀମ୍ ।।

(ରତିମଞ୍ଜରୀ—ଜୟଦେବ)

ଶୂନ୍ୟଂ ବାସଗୃହଂ ବିଲୋକ୍ୟ ଶୟନାଦୁତ୍ଥାୟ କିଂଚିଚ୍ଛନୈ-
ର୍ନିଦ୍ରାବ୍ୟାଜମୁପାଗତସ୍ୟ ସୁଚିରଂ ନିର୍ବର୍ଣ୍ଣ୍ୟ ପତ୍ୟୁମୁଖମ୍ ।
ବିଶ୍ରବ୍ଧଂ ପରିଚୁମ୍ବ୍ୟ ଜାତପୁଲକାମାଲୋକ୍ୟ ଗଣ୍ଡସ୍ଥଳୀଂ
ଲଜ୍ଜାନମ୍ରମୁଖୀ ପ୍ରିୟେଣ ହସତା ବାଲା ଚିରଂ ଚୁମ୍ବିତା ।।

(ଅମରୁଶତକ—କବି ଅମରୁ)

ସୁରତକାଳରେ ନୀବୀମୋକ୍ଷର ସାର୍ଥକତା: —

କାନ୍ତେ ତଳ୍ପମୁପାଗତେ ଶିଥିଳିତା ନୀବୀ ସ୍ୱୟଂ ବନ୍ଧନାଦ୍—
ବାସୋ ବିଶ୍ଳଥମେଖଳାଗୁଣଧୃତଂ କିଞ୍ଚିନ୍ନିତମ୍ବସ୍ଥିତମ୍ ।
ଏତାବତ୍ ସଖି ! ବେଦ୍ମି କେବଳମହଂ ତସ୍ୟାଙ୍ଗସଙ୍ଗେ ପୁନଃ
କୋଽସୌ କାସ୍ମି ରତଂ ଚ କୀଦୃଶମିତି ସ୍ୱଳ୍ପାପି ମେ ନ ସ୍ମୃତିଃ ।।

(ନାଟ୍ୟଶାସ୍ତ୍ର – ଭରତ)

ଅବିଦିତସୁଖଦୁଃଖଂ ନିର୍ଗୁଣଂ ବସ୍ତୁ କିଞ୍ଚିତ୍
ଜଡ଼ମତିରିହ କଶ୍ଚିତ୍ ମୋକ୍ଷ ଇତ୍ୟାଚଚକ୍ଷେ ।
ମମ ତୁ ମତମନଙ୍ଗସ୍ମେରତାରୁଣ୍ୟଘୂର୍ଣ୍ଣନ୍ –
ମଦକଲମଦିରାକ୍ଷୀନୀବିମୋକ୍ଷୋ ହି ମୋକ୍ଷଃ ।।

(ଶୃଙ୍ଗାରରସାଷ୍ଟକ—କାଳିଦାସ)

ଓଷ୍ଠାଗ୍ରଂ ସୁରତକ୍ଷଣେ ବିଗଳିତଃ କୂପୋଦରେ ମସ୍ତ୍ର୍ୟବଦ୍ –
ଧମ୍ମିଲ୍ଲଃ କୁସୁମାକୁଲୋ ବିଗଳିତ ପ୍ରାପ୍ନୋତି ବନ୍ଧଂ ପୁନଃ ।
ପ୍ରଚ୍ଛନ୍ନୌ ବ୍ରଜତଃ ସ୍ତନୌ ପ୍ରକଟତାଂ ଶ୍ରୋଣୀତଟଂ ଦୃଶ୍ୟତେ
ନୀବୀ ଚ ସ୍ଖଳତି ସ୍ଥିତାପି ସୁଦୃଢ଼ଂ କାମେଙ୍ଗିତେ ଜ୍ଞାପିତାମ୍ ।।

(ରତିରହସ୍ୟ)

ନାଭେର୍ମୂଲକୁଚୈଦରପ୍ରକଟନବ୍ୟାଜେନ ଯଦଃଯଷ୍ଟିତାଂ
ସାକାଙ୍କ୍ଷଂ ମୂହୁରୀକ୍ଷଣଂ ସ୍ମିତଲତା ମାର୍ଗାନୁବନ୍ଧସ୍ୟ ଚ ।
କେଶଭ୍ରଂଶନସଂଯମୌ ଚ କର୍ମିଭୂର୍ମିଭ୍ରୂଃଦଯନ୍ଦର୍ଶନୈଃ
ସୌଭାଗ୍ୟାଦଗୁଣପ୍ରଶସ୍ତିକଥନୈସ୍ତନ୍ତ୍ରସାନୁରାଗାଙ୍କିତମ୍ ॥

(ରସିକସର୍ବସ୍ୱ)

ମୋକ୍ଷ କରିଦଏ ବେଦ ଶାସ୍ତ୍ର
ମୋକ୍ଷ ଏ ଜବଢ଼େ ଖାବନୀ କର
ପୁରାଣ ଏ ବୋଲି ନ'କର ଡର
ପାଣିନି ବାକ୍ୟେ କରିବ ଇତର
ଜଙ୍ଘାଛନ୍ଦ ଅନ୍ତରେକେ
ପଢ଼ଛନ୍ଦ ବାତ୍ସ୍ୟାୟନ ଶାସ୍ତ୍ର ଯେଉଁ ତନ୍ତ୍ରାଙ୍ଗୀ-ଉପାସିକେ ॥

(ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର—ଯଦୁମଣି)

ବରବର୍ଣ୍ଣୀ ନଖରେ ଭୂମି ଚରେ:—

ବରବର୍ଣ୍ଣୀ ନଖେ          ଚରେନା ଧରଣୀ
ସେ ଚତ୍ୱରେ କଣ ନ ଆଏ କ୍ଷମା
ସେ କ୍ଷମାଟି କଣ          ସତରେ ନୀରବ
ପ୍ରକାଶ କରେ ନା ପ୍ରଣୟ-ଆଶା ॥

(ଶ୍ରୀକୃଷ୍ଣ – ଜୟକୃଷ୍ଣ ପଟ୍ଟନାୟକ)

ନାରିକେଳ ସହ କୁଚର ସାଦୃଶ୍ୟ :—

ଭଲ ଜାଣୁ ମଣି ରମଣୀରତନ ପକ୍ୱଚୂତ ଦେଇ ମୋ କର,
ମୋତେ ବୋଇଲା ଏହା ଚାଖ କର;
ମୁଁ ବୋଇଲି ସୁବାକାକୁଁ ଜାଣିଅଛୁ ନାରିକେଳ ଚାଖିବାର
ରେ ମଧୁପ !
ମୋହ ଗଢ ଜାଣି ଶିର ନୁଆଇଁ
ନାସା ପୁଡ଼ାକୁ ଅଳପ ଫୁଲାଇ
କେହ୍ନୁ କାହ୍ନା ବୋଲି ପାଳିବକ ଆଉ ବୋଇଲା ଗେହ୍ଲାଇ ହୋଇ
ରେ ମଧୁପ !

(ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ)

ଲୀଳାବିକାଶିନୀ ଗଉର ଗଉର ଗଉର ମରାଏ ମଣିବ
ଲଳିତ ଗଉରୀ ଗଉରୀ ଗଉରୀ ଅନୁବରତରେ ଗୁଣିବ
କୋକିଳ, ଲକ୍ଷ୍ୟ ଥିବ ତାର ମୋ ତହିଁ
ଲାବଣ୍ୟ ଅଧର ଗଉର ଗଉର ଗଉର ହୋଇଥିବ ନୋହି ॥୨୮॥

ଅନ୍ୱୟ – ରେ କୋକିଳ, ମୋ ଲୀଳାବିକାଶିନୀ ମୋ ଗଉର (ଆଦର) ଓ ଗଉର (ସ୍ନେହ)କୁ ଗଉର (ଗୌରବ) ମନେ କରେ । ଲଳିତ (ସୁନ୍ଦର) ଗଉରୀ (ଗୋରଚନା) ଗଉରୀ (ଗଉରାଙ୍ଗୀ) ସର୍ବଦା ଗଉରୀ (ପାର୍ବତୀ)ଙ୍କୁ ଗୁଣିବ (ସ୍ମରଣ କରିବ) । ମୋ ପ୍ରତି ତାର ଲକ୍ଷ୍ୟ ଥିବ । ତାର ଲାବଣ୍ୟ ଅଧର ଗଉର (ସମ୍ମାନ ଏଠାରେ ପ୍ରଶଂସନୀୟ) ନ ହୋଇ ଗଉର (ଫିକା) ଓ ଗଉର (ଚେତନାଶୂନ୍ୟ) ହୋଇଥିବ ।

ଅର୍ଥ – ରେ କୋକିଳ, ସେ ଲୀଳାପ୍ରକାଶପ୍ରବୀଣା ରାଧା ମୋର୍ ଆଦର ଓ ସ୍ନେହକୁ ଗୌରବ ମନେ କରେ । ସେ ସୁନ୍ଦରୀ ଗୋରଚନା ଜିତ ଗୋରୀ ସ୍ୱର୍ଣ୍ଣାଙ୍ଗୀ ସର୍ବଦା ପାର୍ବତୀଙ୍କୁ ସ୍ମରଣ କରୁଥିବ । ତାର ଲକ୍ଷ୍ୟ ମୋ ଠାରେ ଥିବ । ତାର ସୁନ୍ଦର ଓ ପ୍ରଶଂସନୀୟ ବଦନ ବର୍ତ୍ତମାନ ବିରହଦୁଃଖରେ ପାଣ୍ଡୁର ଦେଖାଯାଉଥିବ ଓ ତାର ଚୈତନ୍ୟ ଲୋପ ହୋଇଥିବ ।

ରାଧା ଗୌରବର୍ଣ୍ଣା ଓ ସ୍ୱର୍ଣ୍ଣାଙ୍ଗୀ : –

ହିରଣ୍ମୟୀ ସାଲଲତେବ ଜଙ୍ଗମା
ଚ୍ୟୁତା ଦିବଃ ସ୍ଥାସ୍ନୁରିବାଽଚିରପ୍ରଭା ॥
(ଭଟ୍ଟି କାବ୍ୟ)

କିମିନ୍ଦୁଃ କିଂ ପଦ୍ମଂ କିମୁ ମୁକୁରବିମ୍ବଂ କିମୁ ମୁଖଂ
କିମବ୍ଜେ କିଂ ମୀନୌ କିମୁ ମଦନବାଣୌ କିମୁ ଦୃଶୌ ।
ଖଗୌ ବା ଗୁଚ୍ଛୌ ବା କନକକଲଶୌ ବା କିମୁ କୁଚୌ
ତଡ଼ିଦ୍ ବା ତାରା ବା କନକଲତିକା ବା କିମବଲା ॥
(ସୁଭାଷିତରତ୍ନଭାଣ୍ଡାଗାର)

ପ୍ରାଣବାନ୍ଧବୀ ହେନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲ ଯୋରହସ୍ତରେ
ଯେ ମୋ କନକଗୋଷ୍ଠି
ଧନ୍ୟ ଧନ୍ୟ ତାହାର ଶୋଭାସୃଷ୍ଟି ।।
(କବିତା — ନୀଳକଣ୍ଠ ଭଞ୍ଜ)

ବିଗ୍ରହକାନ୍ତ କି ଚନ୍ଦ୍ରକାନ୍ତ କନକ ଅନାଇଲ
ବାନ ବଢ଼ାଇ ଅଗ୍ନିରେ ଦାହିଂଶିଲେ କଷାଇ ହେଲ ।।
(ବୈଦେହୀଶ ବିଳାସ — ଉପେନ୍ଦ୍ର ଭଞ୍ଜ)

ଲବଣୀ ଶିରୀଷରୁ କୋମଳ ନେଇ ଦେହେ
ବନ୍ଦ୍ୟ ହେମ ଚମ୍ପାକାନ୍ତି ହରକାନ୍ତି ଦେହେ ।।
(ରସିକହାରାବଳୀ—ଉପେନ୍ଦ୍ର ଭଞ୍ଜ)

ଉଷ୍ଣ ଦେଲେ ପୀତାମ୍ବରକୁ ଉରୁସନ୍ଧିକ ବୃନ୍ଧ
ସିନ୍ଧ ନିତମ୍ବିନୀ ନିବିଡ଼େ ନୀବୀବନ୍ଧକୁ ବାନ୍ଧି ।
ଚୋର ହୋଇଲା ଚୋଖ ଦେହ ଆଲିଙ୍ଗନକୁ ପାଇ
ଧଡ଼ି ନ ଥିଲ ଶାଢ଼ୀଙ୍କ ପର ହଣନ୍ତା ନାହିଁ ।।
(ଲାବଣ୍ୟବତୀ — ଉପେନ୍ଦ୍ର ଭଞ୍ଜ)

ସର୍ପପୁରେ ଯାଇ ପର୍ବତ କନ୍ଦଳ ମଣିଜାତ ହେମ-ମଞ୍ଜୁଷା
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ ପତ୍ରାବଳୀରେ କି ମାଧୁରୀ
ଫୁଲ୍ଲ, ତହିଁ ପୁଣି ଫଳ ଏତେକ
ସବେବୃକ୍ଷ ଚମ୍ପା କୁମୁଦ ପାଟଳୀ ନିଅଳୀ ଶିରୀଷ ଅଶୋକ ।
ସଫଳ ଆମ୍ବ ତାଳମ୍ବ ଜମ୍ବୁ ଦ୍ରାକ୍ଷା ଡୁମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ହଂସ କପୋତ ଶୁକ ସଙ୍ଗ
ସୁସ୍ୱରେ, ମହା ଅଦ୍ଭୁତ କଥା ଏହ
ସପତଜାତ ଫୁଲ ଫଳ ଲଡକା ଏକା ଲତାକେ ଶୁଣା ନାହିଁ ।।
(ସୁଭଦ୍ରାପରିଣୟ—ଉପେନ୍ଦ୍ର ଭଞ୍ଜ)

ରସାଣିଲ ହାଟକ          ସଗ କାନ୍ତ ଝଟକ
ଛବ କ ନକ ଅପସର ସର ରେ,
ରଖିଲ ମନ ହମ୍ବାଧସ ଧର ରେ ॥
(ରସପଞ୍ଚକ — ଉପେନ୍ଦ୍ର ଭଞ୍ଜ)

ସୁଧା ପର ସୁଧା ସିନାରେ ସଙ୍ଗାତ
ସୁଧା ପର ସୁଧା ସିନା
ସ୍ତ୍ରିଗ୍ମ ମାଡ଼ରକେ ଅଛନ୍ତି ଯେତେକ
ସବେଁ ପିତଳ ସେ ସୁନା ॥
(ଗୋପାଳକୃଷ୍ଣ ପଦ୍ୟାବଳୀ)

ସହଜେ ସୁବର୍ଣ୍ଣ ଯୌବନ ହେଲା ଯୋଗ୍ୟ ରସାଣ
ରୂପାସ୍ପର ହେଲା ରୂପସୀ ଷଷ୍ଠ ଅମୋଘ ବାଣ ॥
(ଚନ୍ଦ୍ରଭାଗା — ରାଧାନାଥ ରାୟ)

ଝପ୍‌ସର ନନ୍ଦତ          ଏ ସୁନ୍ଦରୀ ବୃନ୍ଦେ
ଝଟକ-ହାଟକ-ଗୋର
ଶୋଭାସ୍ୱର୍ଗପୁର —          ଦଶ ପ୍ରାପ୍ତ ହେଲେ
ସିନା ଏ ବ୍ରଜ-କଶୋର ॥
(ଯଯାତି — ରାଧାନାଥ ରାୟ)

ଭାବୁଥିଲେ ଲୋକେ          ଦେଖି ସେ ରୂପସୀ-
ମୌଳିମଣି-ରୂପ-ପ୍ରଭା
ଶୋଭା ସ୍ୱର୍ଣ୍ଣ ଗ୍ରନ୍ଥେ          ସତର୍କେ ବର୍ଣ୍ଣ
ଉତାରଛୁ ଢ଼ାଳ ଅବା ॥
(ଶଶିପ୍ରଭା — ଚିନ୍ତାମଣି ମହାନ୍ତି)

କନକ-ବରଣୀ          କନକତ ଅଙ୍ଗ
ସ୍ଫୁରେ କନକର ପ୍ରଭା
କନକେ ମଣ୍ଡିତ          ହେଲା ପ୍ରାପ୍ତ ହେଲେ
ଅମର-ଅପୁର-ସଭା ॥
(ମୋହନୀ — ଚିନ୍ତାମଣି ମହାନ୍ତି)

ଊରୁ ଯେ ଥିଲ ରମ୍ଭା ସମ, ଗୌରକାନ୍ତି, ଖଞ୍ଜନନୟନା
କ୍ଷୀଣକଟି, କମ୍ବୁଗ୍ରୀବା, ତନ୍ୱୀ, ସୁଭ୍ରୂ, ସ୍ୱରଚନ୍ଦ୍ରାନନା
ଶିରୀଷକୋମଳାଙ୍ଗୀ, ବିଦ୍ୟୁତ୍‌ପ୍ରଭା, ପକ୍ୱବିମ୍ବାଧରା
ଆଗୁଲ୍‌ଫଲମ୍ବିତକେଶା, ଗର୍ବାଳସମନ୍ଦଗମନା ॥

(ତୈଲଚଣ୍ଡୁଳ – ଦରଦୀକବି)

ବିରହିଣୀର ଅଙ୍ଗରେ ପାଣ୍ଡୁରତା:—

ନିଦ୍ରାପ୍ରବନ୍ଧାଦସ୍ମମଧୁସ୍ୱଣାମଜସ୍ରମାପ୍ଲୁତସହସ୍ରନେତ୍ରଃ
ଶଚ୍ୟାଶ୍ଚିରଂ ପାଣ୍ଡୁକପୋଳଲମ୍ବାନ୍ ମନ୍ଦାରଶୂନ୍ୟାନଳକାଂଶ୍ଚକାର ॥

(ରଘୁବଂଶ – କାଳିଦାସ)

ତନୂନି ପାଣ୍ଡୂନି ସମାନ୍ତରାଣି ମୁଦ୍ଗମୂର୍ଦ୍ଧ୍ୱର୍କମ୍ପିତପୃଷ୍ଠାଣି
ଅଙ୍ଗାନ୍ୟନଙ୍ଗଃ ପ୍ରମଦାଜନସ୍ୟ କରୋତି ଲାବଣ୍ୟସସମ୍ଭ୍ରମାଣି ॥

(ଋତୁସଂହାର—କାଳିଦାସ)

କ୍ଷାମକ୍ଷାମକପୋଳମାନନମୁରଃ କାଠିନ୍ୟମୁକ୍ତସ୍ତନଂ
ମଧ୍ୟଃକ୍ଲାନ୍ତତରଃ ପ୍ରକାମବିନତାବଂସୌ ଛବିଃପାଣ୍ଡୁରା ।
ଶୋଚ୍ୟା ଚ ପ୍ରିୟଦର୍ଶନା ଚ ମଦନକ୍ଲିଷ୍ଟେୟମାଲକ୍ଷ୍ୟତେ
ପତ୍ରାଣାମିବ ଶୋଷଣେନ ମରୁତା ସ୍ପୃଷ୍ଟା ଲତା ମାଧବୀ ॥

(ଅଭିଜ୍ଞାନ ଶାକୁନ୍ତଳ—କାଳିଦାସ)

ନୂନଂ ତସ୍ୟାଃ ପ୍ରବଲରୁଦିତୋଚ୍ଛୂନନେତ୍ରଂ ପ୍ରିୟାୟାଃ
ନିଃଶ୍ୱାସାନାମଶିଶିରତରେ ଭିନ୍ନବର୍ଣ୍ଣାଧରୋଷ୍ଠମ୍ ॥

(ମେଘଦୂତ—କାଳିଦାସ)

କିଂ କୃପାପି ତବ ନାସ୍ତି କାନ୍ତସ୍ୟା
ପାଣ୍ଡୁଗଣ୍ଡପତିତାଲକାନ୍ତୟା ।
ଶୋକସାଗରଜଲେଽଦ୍ୟ ପାତିତାମ୍
ତ୍ୱଦ୍‌ଗୁଣସ୍ମରଣମେବ ପାତି ତାମ୍ ॥

(ଯମକକାବ୍ୟ—ଘଟକର୍ପର)

ଦ୍ରୁମବସରବଶୀର୍ଣ୍ଣାମ୍ଭୋଜରୁକ୍ଷାନନଶ୍ରୀଃ
ସ୍ମରମରୁଦପରଜ୍ୟଦ୍‌ବନ୍ଧୁଜୀବୋପମୋଷ୍ଠୀ ।

ଅପହ୍ନର ଶରଦର୍କୋଦ୍ଗ୍ରୀବଚେନ୍ଦୀବରାକ୍ଷୀ
ତବ ବିରହବପର୍ତ୍ତିଗ୍ଲାପିତାସୀଦ୍‌ବିଶାଖା ॥
(ଉଜ୍ଜ୍ୱଳନୀଳମଣି – ରୂପଗୋସ୍ୱାମୀ)

ଆବିର୍ଭୂତା ଯଦବଧି ମଧୁସ୍ୟନ୍ଦିନୀ ନନ୍ଦସୂନୋଃ
କାନ୍ତିଃ କାଚିନ୍ନିଖିଳନୟନାକର୍ଷଣେ କର୍ମଣଜ୍ଞା ।
ଶ୍ୱାସୋ ଦୀର୍ଘସ୍ତଦବଧି ମୁଖେ ପାଣ୍ଡିମା ଗଣ୍ଡଯୁଗ୍ମେ
ଶୂନ୍ୟା ବୃତ୍ତିଃ କୁଳମୃଗଦୃଶାଂ ଚେତସି ପ୍ରାଦୁରାସୀତ୍ ॥
(ରସଗଙ୍ଗାଧର—ପଣ୍ଡିତରାଜ ଜଗନ୍ନାଥ)

ଦରଦଳିତହରିଦ୍ରାଗ୍ରନ୍ଥିଗୌରେ ଶରୀରେ
ସ୍ଫୁରତି ବିରହଜନ୍ମା କୋଽପ୍ୟୟଂ ପାଣ୍ଡୁଭାବଃ ।
ବଳତି ଯତ ହି ଯସ୍ମିନ୍ ସାର୍ଦ୍ଧମାବର୍ତ୍ତି ହେମ୍ନା
ରଜତମିବ ମୃଗାକ୍ଷ୍ୟାଃ କଳ୍ପିତାନ୍ୟଙ୍ଗକାନି ॥
(ସୁଭାଷିତ – ରତ୍ନଭାଣ୍ଡାଗାର)

କୃଷ୍ଣବିରହଜ୍ୱରେ କେ ଦେହ କାଶ ପାଣ୍ଡୁର କରି
କେଶବସନ ମଳିନ ଦୀନ ମନରେ ଅଛୁ ଧରି ।
କରି ଦୂଷଣ ଅଙ୍ଗଭୂଷଣ ବହଇ ନାହିଁ ଅଙ୍ଗେ
କୁରଙ୍ଗୀ ପ୍ରାୟ ଝୁରଇ ଭୟ ପାଇବାରୁ ଅନଙ୍ଗେ ॥
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

ମମ ଧନର ଏସନ ପରସନ ଚଞ୍ଚଳ କର ଦରଶନ
ଚଳ ଚପଳ କରଣ ହେତ ସତ କଜଳସଜଳ ନୟନ
ଜଳଦ ! ସତ ଏ ଯଶ ଅରଜନ
ଦହ କନକ ଚହକ ତନର ରଜତ ସମ ଅଯତନ ॥
(ଅବନାରସତରଙ୍ଗ – ଉପେନ୍ଦ୍ର ଭଞ୍ଜ)

ଅନେକ ଦହକ କନକ ଗଢ଼ଣ ତନୁ ଧୂସର ଦର୍ଶିଲା ନ,
ରସାଳସା ରସା ଦରପଣ ଦଶ ଦରପଣରୁ ରସିଲା ନ,
ନବନାଗଣ; ଶିବ ଶିବ ତ ଘୋଷିଲା ନ,
ଗିରିଦରୀ ସବ ପୁରୀ କ ବିସ୍ମର କରଜେ ମସ୍ତ ଚସିଲା ନ,
(ବିଦଗ୍ଧଚିନ୍ତାମଣି – ଅଭିମନ୍ୟୁ)

ଆହା କି ବିବଶା            ଖଞ୍ଜରୀଟ ଦୃଶା
ଅବଳା ମଳିନା କୃଶା
ଦିବସ ପାଣ୍ଡୁର            ଚନ୍ଦ୍ରକଳା କିବା
କୁହେଳିକାମୟ ଉଷା ॥
(ଇନ୍ଦୁମତୀ—ଅପର୍ଣ୍ଣା )

ଏକେତ ବସନ୍ତ ପ୍ରକୋପ ଟାଣ
ତା ସଙ୍ଗେ ପୁଣି ଏ ମଦନ ବାଣ
ଦେଖି ଦେଖି ପ୍ରମଦାର ଅବସ୍ଥା
ପାଣ୍ଡୁବର୍ଣ୍ଣ ଅଙ୍ଗ ଲତିକା ତଥା
ଅଳସେ ମାରନ୍ତି ହାଇ,
ଫୁଟି ଉଠେ ଅଙ୍ଗ ଲାବଣ୍ୟ ତରଙ୍ଗ ସରୋବରରେ ଯଥା ଗ୍ରୀଷ୍ମ ॥
(ଋତୁସଂହାର—ଦରଦୀକବି)

ଧୂସରଗଣ୍ଡେ ପ୍ରିୟାର ମୁଣ୍ଡେ ଅଳକାରୁକ୍ଷ କେଶ
କେତେବେ ହେଁ କାନ୍ତ ନୋହୁଛ ଭ୍ରାନ୍ତ ନାହିଁକି ଦୃଷ୍ଟି ଲେଶ
ଶୋକ-ଅର୍ଣ୍ଣବ-ବାରି-
ମଜ୍ଜିତା ତାକୁ ରକ୍ଷା କରୁଛ ତୁମ୍ଭ ପୁଣ୍ୟାବଳୀ ॥
(ଅଞ୍ଜଳି—ଦରଦୀକବି)

Fair was the morn,
When the fair queen of love,
Paler for sorrow than
Her milk-white dove.
(The passionate pilgrim-William Shakespeare)

ବ୍ୟଥିତ ହୋଇ ଶୁଣୁଥିବ ହରିଣ ହରିଣ ହରିଣ-ନୟନା
ବାନ୍ଧବ ବଶିଖ ବଶିଖ କୁମୁଦ କୁମୁଦ ଶର ରୋଷ ଦେନା
କୋକିଳ, ବାଣୀ ନ ଶୁଭିବ ତାହାର
ବଡ଼ ଦୁଃଖେ ରହିଥିବ ବନ୍ଧୁ ଜୀବ ବନ୍ଧୁଜୀବକଳତଅଧରା ।୨୪।

ଅନ୍ୱୟ—ରେ କୋକଳ, ସେ ହରଣ (ମୃଗ) ନୟନୀ ବ୍ୟଥା ପାଇ ହରଣ (ସୂର୍ଯ୍ୟ) ଓ ହରଣ (ଶିବଙ୍କୁ) ସ୍ମରୁଥିବ । ବଶୀଖ (ଶିଖାରହିତ ଅର୍ଥାତ୍ ଅଗ୍ନିମୟ ନ ହୋଇ କୋମଳ) ବଶୀଖ (ଶର) କୁମୁଦ (କଇଁ) – କନ୍ଦର୍ପର ଫୁଲଶର ବେଗରେ ବାଜିଲେ ତାକୁ କୁମୁଦ (ସର୍ପ) ପରି ଲାଗିବ । ତାର ଚେତନା ଲୋପ ହୁଅନ୍ତେ ଆଉ ତା କଥା ଶୁଭିବ ନାହିଁ । ସେ ବନ୍ଧୁଜୀବ (ବନ୍ଧୁଲିଫୁଲ) ଜିତ ଅଧରୀ ବନ୍ଧୁ (ବାନ୍ଧବୀ)ର ଜୀବ (ପ୍ରାଣ) ବଡ଼ ଦୁଃଖରେ ଥିବ ।

ଅର୍ଥ – ରେ କୋକଳ, ସେ ମୃଗନୟନୀ କାମତାପନାଶାର୍ଥେ ସର୍ବଦା ସୂର୍ଯ୍ୟଙ୍କୁ (ହୃଦୟରେ କାମ ତାପ ଦ୍ୱାସ) ଓ ଶିବଙ୍କୁ (କନ୍ଦର୍ପଜ୍ୱାଳାରୁ ରକ୍ଷା ପାଇବା ଲାଗି) ଚିନ୍ତା କରୁଥିବ । ଫୁଲଶରଧାରୀ କନ୍ଦର୍ପର ନୀଳୋତ୍ପଳ ଶର ତାକୁ ସର୍ପ ପରି ବୋଧ ହେବ । ତାର ଚୈତନ୍ୟ ଲୋପ ପାଇଥିବାରୁ ତା କଥା ଆଉ ଶୁଭିବ ନାହିଁ । ସେ ବନ୍ଧୁଲିଫୁଲଜିଣାଅଧରୀ ବାନ୍ଧବୀର ପ୍ରାଣ ବଡ଼ ଦୁଃଖରେ ଥିବ ।

ବିରହିଣୀର ଚୈତନ୍ୟ ଲୋପଃ—

ଜ୍ଞାନବସାନ ବଧିବଣେ ତାହା କୃଶାଙ୍ଗୀ ଗୃହିଁ
ମୂର୍ଚ୍ଛିଲା ଶୁଣି କି ଡାକିଲେ କିଛି ଚେତନା ନାହିଁ ।

(କୋଟିବ୍ରହ୍ମାଣ୍ଡସୁନ୍ଦରୀ – ଉପେନ୍ଦ୍ର ଭଞ୍ଜ)

କୃଷ୍ଣର ଦେହେ ଦେଇ ମନ । କ୍ଷଣ କ୍ଷଣକେ ଅଚେତନ ॥
ସହି ନ ପାରି କାମଜ୍ୱର । କେହି ଲୋଚନ କଲା ସ୍ଥିର ॥

(ଶ୍ରୀମଦ୍ଭାଗବତ – ଜଗନ୍ନାଥ ଦାସ)

ବିରହିଣୀର ଦୁଃଖ ସ୍ମରଣକରି ବିରହୀର ଚିନ୍ତାଃ –

ପ୍ରସ୍ଥାନଂ ବଲୟୈଃ କୃତଂ ପ୍ରିୟସଖୈରସ୍ରୈରଜସ୍ରଂ ଗତଂ
ଧୃତ୍ୟା ନ କ୍ଷଣମାସିତଂ ବ୍ୟବସିତଂ ଚିତ୍ତେନ ଗନ୍ତୁଂ ପୁରମ୍ ।
ଯାତୁଂ ନିଶ୍ଚିତଚେତସି ପ୍ରିୟତମେ ସର୍ବେ ସମଂ ପ୍ରସ୍ଥିତାଃ
ଗନ୍ତବ୍ୟେ ସତି ଜୀବିତ ପ୍ରିୟସୁହୃତ୍ସାର୍ଥଃ କମୁ ତ୍ୟଜ୍ୟତେ ।

(ଅମରୁ ଶତକ – କବି ଅମରୁ)

ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ
ସମସ୍ତ ପ୍ରକାରେ ମୁହିଁ
ମୋ ଆୟୁଷ ଘେନ ଜୀଇ ଥାଉ ପଛେ
ଶରଦ-ଚନ୍ଦ୍ରମା-ମୁହିଁ ॥
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ଜାଣିଲି କେବଳ ମୋତେ ଏକା ପୀଡ଼ା
ଦେଉନାହିଁ ଫୁଲଶର
ସେହି ଫୁଲଶରେ ମୋର ପ୍ରାଣେଶ୍ୱରୀ
ଚନ୍ଦ୍ରକୁ କରେ ଜର୍ଜର ॥

ଶକଳ କରବ ଯମକ ଯମକ ଯମକ ଅଳସୁତ ସ୍ୱରେ
ଶୋଇ ନ ଥିବ ସେ ପଲକେ ପଲକେ ମୋର କେଳିପୁଣି ମନରେ
କୋକିଳ, ଶଶିକଳା ପ୍ରାପ୍ତ ହେବଣି
ଶ୍ରବଣେ ପୁଣି ସେ ଅଳପକ ଅଳପକ ଅଳପକ ମୋ ଧ୍ୱନି ।୩୦।

ଅନ୍ୱୟ – ରେ କୋକିଳ, ଅଳିସୁତ (ଭ୍ରମର ଶିଶୁ)ର ଯମକ (ଆଡ଼ମ୍ବର) ଯମକ (କର୍ଣ୍ଣସୁଖକର) ସ୍ୱରରେ ସେ ଶକଳ (ବାସନା)କୁ ଯମକ (ସଂଯମ) କରିବ । ସେ ମୋ କେଳି ପୁଣି (ମନେ ପକାଇ) ପଲକେ (ମୁହୂର୍ତ୍ତେ) ପଲକେ (ପଲଙ୍କରେ) ଶୋଇ ନ ଥିବ । କର୍ଣ୍ଣରେ ସେ ମୋର ବଂଶୀନାଦ ଅଳପକ (ଧୀରେ) ଅଳପକ (ଅଳ୍ପମାତ୍ରାରେ) ଶୁଣି ବିରହଚିନ୍ତାରେ ଶଶିକଳା ପ୍ରାପ୍ତ, କ୍ଷୀଣ ହେବଣି ।

ଅର୍ଥ – ରେ କୋକିଳ, ଭ୍ରମରର ଆଡ଼ମ୍ବରପୂର୍ଣ୍ଣ ଓ କର୍ଣ୍ଣସୁଖକର ସ୍ୱରକୁ ଶୁଣି ସେ ତାର କାମପ୍ରବୃତ୍ତିକୁ ସଂଯମ କରିବ । ସେ ମୋର କଥା ଚିନ୍ତା କରି ମୁହୂର୍ତ୍ତେ ହେଲେ ପଲଙ୍କରେ ଶୋଇ ନ ଥିବ । କର୍ଣ୍ଣରେ ସେ ମୋର ମୃଦୁ ଓ ଧୀର ବଂଶୀସ୍ୱନକୁ ଅଳ୍ପ ମାତ୍ର ଶୁଣି ମୋ ଚିନ୍ତାରେ ଚନ୍ଦ୍ରକଳା ପରି କ୍ଷୀଣ ହେବଣି ॥

ଭ୍ରମର ଗୁଞ୍ଜନରେ ବିରହିଣୀର ଅବସ୍ଥା: –

ମତ୍ତଦ୍ୱିରେଫ-ପରିଚୁମ୍ବିତ-ଚାରୁପୁଷ୍ପା
ମନ୍ଦାନିଳାକୁଳିତ-ନମ୍ର-ମୃଦୁ-ପ୍ରବାଳାଃ
କୁର୍ବନ୍ତି କାମିମନସାଂ ସହସୋତ୍ସୁକତ୍ୱଂ
ଚୂତାଭିରାମକଳିକାଃ ସମବେକ୍ଷ୍ୟମାଣାଃ ।
(ଋତୁସଂହାର—କାଳିଦାସ)

କୁସ୍ମିତ କଦମ୍ବ ଘନ ସୁଗନ୍ଧ ତରୁବର
କୁସୁମ କଳରେ ବିହରନ୍ତି ମଧୁକର ।
ଧ୍ୱାନ୍ତେ ସବୁର ଶରୀର ଦିବ ଫାଟି
ସଂସାର ଜନମନ୍ତେ ତଳକୁ କଲା ଦୃଷ୍ଟି ॥
(ମହାଭାରତ—ସାରଳାଦାସ)

ଝୁଣ୍ଟିଲେ ଅଳି ଅଳି    ମାଳତୀ ଆଳି ଆଳି
ଦମ୍ଭକୁ ନ ସମ୍ଭାଳି ଭାଳି
ଜ୍ଞାନ କଟାଳି ଟାଳି    ପ୍ରେମକୁଶଳୀ ଶଳୀ
ମୁଖେ ଦେବ ବକାଳି କାଳି
ହେ ଜଳଧର !
ହେଲ ଶରଦ ବଳି ବଳି
ଥିବେ ସଜଣି ପାଳି ପାଳି
ସେହୁ ମୁଁ ଶୂଳୀ ଶୂଳୀ    ଲଭି ରସାଳୀ ଶାଳୀ
ଦେଲ ଏ ଦୁଃଖ ଭଳି ଭଳି ॥
(ରସିକ ହାରାବଳୀ—ଉପେନ୍ଦ୍ର ଭଞ୍ଜ)

ନନ୍ଦା କରୁଥାଇ ଫୁଲ ଭ୍ରମର ପ୍ରୀତିକ
ମୁଁ ବୋଲଇ ଯାଇଁ ଯେବେ ଶ୍ରବଣ କଥକ ॥
(ରସଲେଖା—ଉପେନ୍ଦ୍ର ଭଞ୍ଜ)

ମଧୁପ ଝଙ୍କାର ଶ୍ରବଣେ ଶୁଣି
ମର ମର ବୋଲେ କେଉଁ ରମଣୀ

ମଧୁପ ଶଠ ସ୍ୱଭାବ ଦେଖାଉ
ମଧୁ କୁହିଲ ପଣ ପୋଡ଼ଯାଉ
ମଦ୍ଭକ୍ତ ଗରଜ
ମର୍ଦ୍ଦିବୁ ମାନ ଉପାସ୍ୟ ସରଜ ॥

(ବୈଦଗ୍ଧ ଚିନ୍ତାମଣି—ଅଭିମନ୍ୟୁ)

ମୁକୁଳେ ସହକାର ସୁଶୋଭନ
ମଞ୍ଜୁଅଳି ଚୁମ୍ବେ ତାର ବଦନ
ମୃଦୁ ମନ୍ଦବାତେ ପଲ୍ଲବରାଜ
ଦୋଳନ୍ତି କେସନ ଦେଖ ଗୋ ଆଜ
ଦେଖି ଏ ଶୋଭା ସମ୍ପଦ,
କାମିନୀ ହୃଦସ୍ଥେ ଜଗେ କାମବୃତ୍ତି
ଆସଇ ତାର ଶ୍ରପଦ ॥

(ଋତୁ ସଂହାର—ଦରଦୀ କବି)

ଫୂଲ ଖିଲେ ଗୁଣୀ ଜନୁଁନେ ତୋଲେ
ବେସୁଧ ଭଁବରା କ୍ୟା ବୋଲେ ?
ଗୁନ୍ ଗୁନ୍ ଗୁନ୍,
ପ୍ୟାର କା ଗୀତ ନ ଭୁଲ
ମୈଁ ଭଁବରା ତୁ ଫୂଲ ॥

(ଉର୍ଦ୍ଦୁ କେ ପ୍ରେମଗୀତ – ଅବଦୁଲ୍ ମଜିଦ୍ ଭଟ୍ଟୀ)

ବଂଶୀଧ୍ୱନି ଶ୍ରବଣରେ ବିରହିଣୀ ରାଧାର ଅବସ୍ଥା: –

ଦୃଷ୍ଟିଂ ନିଧାସ୍ୟ ପୁରଶ୍ଚିକୁଞ୍ଜରମ୍ଭବୀଥ୍ୟାଂ
କୃଷ୍ଣେତି ବର୍ଣ୍ଣଯୁଗଳାଭ୍ୟସେନ ରସଜ୍ଞାମ୍ ।
ଶୁଶ୍ରୂଷଣେ ମୁରଳନଃସ୍ୱନ ତସଃ କର୍ଣ୍ଣୌ
ତଦ୍ୱଂ ସୁଖେ ତବ ନସ୍ୟତ୍ୟାହରଦ୍ୟ ରାଧା ॥

(ଉଜ୍ଜ୍ୱଳନୀଳମଣି—ରୂପଗୋସ୍ୱାମୀ)

ଗୋପୀଏ ଶୁଣି ବେଣୁ ଗୀତ
ଅନଙ୍ଗ ବାଣରେ ମୂର୍ଚ୍ଛିତ ॥

(ଶ୍ରୀମଦ୍ଭାଗବତ – ଜଗନ୍ନାଥ ଦାସ)

ବହ୍ୱଳ କଳ ବଉଁଶୀର ଧ୍ୱନ
ଭୁଙ୍କ୍ ଥିଲା କେହୁ ଏଡ଼େ ପିଶୁନ ।।
(ବାସୁଦେବ ବିଳାସ—ନୃସିଂହ ପଟ୍ଟନାୟକ)

ଶୋଣ ଅରୁଣ ଅଧରେ ବେଣୁ ଲଗାଇ
ଶ୍ରଦ୍ଧାରେ ବାଇଲେ ନାନା ଭଙ୍ଗୀ ଲଗାଇ ।
ଶ୍ରବଣ ମାତ୍ରେ ସକଳ ଗୋପାଳବାଳା
ଶମ୍ପା ସମ ଷ୍ଟୁହୁଁ ଷ୍ଟୁହୁଁ ହେଲେ ତରଳା ।।
(ଶ୍ୟାମରାସୋତ୍ସବ – ବ୍ରଜନାଥ ବଡ଼ଜେନା)

ଧୀର ଧୀର କରି ବେଣୁ ବାଉଛୁ
ସର୍ବନାରୀମନ ମାନ ମୋହୁଛୁ ।।
(ଗୋପୀଭାଷା—ଦନାଇ ଦାସ)

ପ୍ରିୟ ଆଳି !
ଶୁଭୁଛୁ ମୁରଲୀ କାକଳି ।
ଶୁଣି ଏ କନକ କମ୍ପୁଛୁ ମୋ ହୃଦ
ଆଉ ନ ପାରେ ସମ୍ଭାଳି ।।
(ବସନ୍ତରାହାସ – କିଶୋରଚନ୍ଦ୍ର ରାଜେନ୍ଦ୍ରଦେବ )

ମୋହନ କୀ ମୁରଲିୟା ବାଜେ
ହୂକ ଠେସ କଳଯାପେ ମୋରେ ଲଗେ ।।
ଦୂର କୋଇ ମୁରଲୀ କୀ ଧୁନ ପର ଗୀତ ସୁନାକେ ଗାୟେ
ଜାନେବାଲେ ସ୍ୱାଦମେଁ ତେରି ନୀଂଦ ନ ମୁଝକୋ ଆୟେ
ଜବ ଚୈନସେ ଦୁନିଆ ସୋୟେ
ଏକ ବିରହୀ କା ମନ ମୋରା ଜାଗେ ।।
(ମେଲା ଚଲଚ୍ଚିତ୍ର – ଶକୀଲ ବାଦୟୁନୀ)

ବିରହିଣୀର ଅଙ୍ଗକୃଶତା:—

ଅଥ ମଦନବଧୂରୁପପ୍ଲବାନ୍ତଂ
ବ୍ୟସନକୃଶା ପରିପାଳୟାମ୍ବଭୂବ ।
ଶଶିନ ଇବ ଦିବା ତନସ୍ୟ ଲେଖା
କିରଣ-ପରିକ୍ଷୟ-ଧୂସରା ପ୍ରଦୋଷମ୍ ।।
(କୁମାରସମ୍ଭବ—କାଳିଦାସ)

ଶରୀରଂ କ୍ଷାମଂ ସ୍ୟାଦସତି ଦୟିତାଲିଙ୍ଗନ ସୁଖେ
ଭବେତ୍ ସାସ୍ରଂ ଚକ୍ଷୁଃ କ୍ଷଣମପି ନ ସା ଦୃଶ୍ୟତ ଇତି
ତୟା ସାରଙ୍ଗାକ୍ଷ୍ୟା ତ୍ୱମସି ନ କଦାଚିତ୍ ବିରହିତଂ
ପ୍ରସକ୍ତେ ନିର୍ବାଣେ ହୃଦୟ ! ପରିତାପଂ ବ୍ରଜସି କିମ୍ ॥

(ମାଳବିକାଗ୍ନିମିତ୍ର – କାଳିଦାସ)

ବିଚ୍ଛେଦେ ତେ ମୁରରେ ! ପାଣ୍ଡୁପ୍ରକାଶା କୃଶାଙ୍ଗୀ
ମ୍ଳାନଚ୍ଛାୟଂ ଦୁକୂଲଂ ନ ଭ୍ରାଜତେ ବିଭ୍ରତୀ ସା
ସଧାମ୍ଭୋଦସ୍ୟ ଗର୍ଭେ ଲୀନା ଯଥା ଚନ୍ଦ୍ରଲେଖା
କଣ୍ଠାର୍ତ୍ତା ତ୍ୱାଂ ସ୍ମରନ୍ତୀ ଧତ୍ତେ ଧ୍ରୁବଂ ଜୀବଯୋଗ୍ୟମ୍ ॥

(ଛନ୍ଦୋମଞ୍ଜରୀ—ଗଙ୍ଗାଦାସ)

କେଉଁ ନାଗରୀ ନାଗରକୁ ଭଜି
ହସ୍ତରୁ ବଳୟ ପଡ଼ୁଛି ଗଳି
କଟି ମେଖଳା ଶିଥିଳେ ନ ରହେ
ବିଚ୍ଛେଦ ଦହନ ଅଙ୍ଗ କି ଦହେ
ତଳେ ଶୋଇ ନ ଦଥଇ
ଝଞ୍ଜାବାତ ବେଳେ ଉଡ଼ିଯିବ ନା କି
ସଖୀ ଏମନ୍ତ ଭାବଇ ॥

(ରସମୁକ୍ତାବଳୀ—ଗଦାଧର ନାରାୟଣ ଭଞ୍ଜଦେବ)

ଅନ୍ତର୍ଗତ ଅଗ୍ନି ଶିଖା ସନ୍ତାପରେ
ଚନ୍ଦନ ତରୁ ସମାନ
ବିରହେ ବଧୂର କୃଶ କଳେବର
ହୋଇଥିଲା ମ୍ରିୟମାଣ ॥

(କାଦମ୍ବରୀ—ବଳଭଦ୍ର ଦେବ)

ସେଥୁଁ ଆନବାଣୀ ଶୁଣି ସେ ତରୁଣୀ କୁମାର ଗଲେ ଯେଉଁ ଦିନୁ
ନୃପତିକୁମାରୀ ଅତି ସୁକୁମାରୀ ଝୁରି ଝୁରି କ୍ଷୀଣ ତା ତନୁ
ସୁନ୍ଦରୀ, ଶୋକ ତା କହିବା ନ ଯାଇ
ନୟନୁଁ ନୀର ବସନ୍ତର କରଣି ଲୁତଶମ୍ଭୁରେ ବରଷଇ ॥

(ଶଶିସେଣା—ପ୍ରତାପ ରାୟ)

ଫୋଟକା ହେଉଛୁ ଶ୍ରୀ ଅଙ୍ଗେ ସିଞ୍ଚିଲେ
କର୍ପୂର ଚନ୍ଦନ ବାରି
ଫୁଙ୍କିଦେଲେ ଉଡ଼ି ଦିବା ପରି ପଡ଼ି
ଅଛୁଟି ତନୁ-ବଲ୍ଲରି ।।
(କିଶୋର ଚନ୍ଦ୍ରାନନଚମ୍ପୂ — କବିସୂର୍ଯ୍ୟ)

ସିଞ୍ଚୁଥିବ ଏବେ ପୁଷ୍କର ପୁଷ୍କର ପୁଷ୍କର ତାହାର ସଜନୀ
ସଜନୀ ଧରିଥିବ ତୁଣ୍ଡେ ପୁଷ୍କର ପୁଷ୍କର ପୁଷ୍କର-ଗମନୀ
କୋକିଳ, ଶଶୀଆନନୀ ହେଲା ଦୁଃଖୀ
ଶୀର୍ଣ୍ଣ ହୋଇଥିବ ଅନାଇ ପୁଷ୍କର, ପୁଷ୍କର ଲୋଡ଼ୁଥିବ ସଖୀ ।୩୧।

**ଅନ୍ୱୟ** – ରେ କୋକିଳ ତାର ସହଚରୀ ତା ଉପରେ ପୁଷ୍କର (ପଦ୍ମ) ପୁଷ୍କର (ପଦ୍ମପାଖୁଡ଼ା) ଓ ପୁଷ୍କର (ଜଳ) ସିଞ୍ଚୁଥିବେ । ସେ ପୁଷ୍କର (ଗଜ) ଗମନୀ ମୁଖରେ ପୁଷ୍କର (ଶିବ) ଓ ପୁଷ୍କର (ସୂର୍ଯ୍ୟ)ଙ୍କୁ ଘୋଷୁଥିବ । ସେ ଶଶୀ ଆନନା ଦୁଃଖିତା ହେଲା । ସେ ପୁଷ୍କର (ଶର୍ବରୀ)କୁ ଚାହିଁ ଶୀର୍ଣ୍ଣା ହୋଇ ପୁଷ୍କର (ସଂଯୋଗ ବା ମିଳନ) ଲୋଡ଼ୁଥିବ ।

**ଅର୍ଥ**—ରେ କୋକିଳ, ତାର ସହଚରୀମାନେ ତାର ବିରହତାପ ନାଶାର୍ଥେ ତା ଦେହରେ ପଦ୍ମ, ପଦ୍ମ ପାଖୁଡ଼ା ଓ ଜଳ ପକାଉଥିବେ । ସେ ଗଜଗମନା ସର୍ବଦା ଶିବଙ୍କୁ (କାମ ତାପ ଉପଶମନ ଲାଗି) ଓ ସୂର୍ଯ୍ୟଙ୍କୁ (ବିରହ ରଜନୀ ବ୍ୟତୀତ କରିବା ଲାଗି) ଜପୁଥିବ । ଚନ୍ଦ୍ରବଦନା ବର୍ତ୍ତମାନ ଦୁଃଖ ଅନୁଭବ କରୁଥିବ । ଶର୍ବରୀକୁ ଦେଖି ବ୍ୟଥିତା ହୋଇ ସେ ମୋର ମିଳନ ଇଚ୍ଛା କରୁଥିବ ।

ବିରହବେଦନା ଉପଶମ ଲାଗି ପଦ୍ମ, ପଦ୍ମପାଖୁଡ଼ା ଓ ଜଳର ଆବଶ୍ୟକତା ଓ ସହଚରୀମାନଙ୍କ ଉପଚାର:—

ଏବଂବିଧାଯ୍ୟ ଚ ତସ୍ୟୈକଦେଶେ ସଖୀକଦମ୍ବପରିବୃତାମ୍, ଅଶେଷ-ସନ୍ତାପାବହାମେବ ଭଗବତୀଂ ଗଙ୍ଗାଂ ହୃମବତୋ ଗୁହାତଲଗତାମ୍, କୁଲାଭ୍ରମିଭ୍ରମିତେନ କର୍ପୂରରସସ୍ରୋତସା କୃତପରିବେଷାଯ୍ୟା ମୃଣାଳଦଣ୍ଡ-ମଣ୍ଡପିକାୟ୍ୟାସ୍ତଳେ କୁସୁମଶୟନମଧିଶୟାନାମ୍, ହାରିଣଦର୍ଭାମ୍ଭୁରସନା-

ନୂପୁରୈର୍ମୃଣାଳମୟୈର୍ନିଗଡିତୈଶ୍ଚରଣଯାତ୍ରାମୀର୍ଷ୍ୟୟା ମନ୍ମଥେନ, ଚନ୍ଦନ-
ଧବଳେ ମୃଷ୍ଟାମିବ ଲଲାଟେ ଶଶଲାଞ୍ଛନେନ, ବାଷ୍ପବାରିବାହିନୀଚୁମ୍ବିତାମିବ
ଚକ୍ଷୁଷି ବରୁଣେନ, ବର୍ଦ୍ଧିତନିଃଶ୍ୱାସ ମରୁତ୍ତଦଷ୍ଟାମିବ ମୁଖେ ମାତରିଶ୍ୱନା,
ସନ୍ତାପପ୍ରତପ୍ତେଷ୍ୱଧ୍ୟାସିତାମିବାଙ୍ଗେଷ୍ୱନଙ୍ଗେନ, କନ୍ଦର୍ପଦାହଦୀପିତେ ଗୃହୀତା-
ମେବ ହୃଦୟେ ହୁତଭୁଜା, ସ୍ୱେଦେନ ପରିଷ୍ୱକ୍ତାମିବ ବପୁଷି ଜଳେନ,
ଦୈବତୈରପି ବଲ୍ପ୍ୟମାନମୌଶ୍ୱର୍ଯ୍ୟାଣିବ ଷଡ୍ଗଣୈଃ, ହୃଦୟେନ ସହ
ପ୍ରିୟତମସମୀପୋପଗତୈରିଙ୍ଗିରୂପଜନିତଦୌର୍ବଲ୍ୟାମ୍, ଅଶ୍ୟାନଚନ୍ଦନ-
ପାଣ୍ଡୁରଂ ଚ ରୋମାଞ୍ଚମନବରତହାରସ୍ପର୍ଶଲଗ୍ନଂ ମୁକ୍ତାଫଳ କରଣ
ପୁଞ୍ଜମୁଦ୍ ବହନ୍ତୀଂ ସ୍ୱେଦସୀକରଣୀଂ ଚ କପୋଳପାଳୀମ୍, ପକ୍ଷପବନେନ
ବ୍ୟଜନସ୍ୟ ଦକ୍ଷିରନୁକମ୍ପ୍ୟମାନାମିବାବତଂସମଧୁକରୈଃ, ଅବତଂସମଧୁକରରବ-
ଦହନଦଗ୍ଧମିବ ଶ୍ରୋତ୍ରମପାଙ୍ଗନିର୍ଗତେନାଶ୍ରୁସ୍ରୋତସା ସିଞ୍ଚନ୍ତୀମ୍, ଅନ୍ତ-
ପ୍ରବୃଦ୍ଧସ୍ୟ ବୃତ୍ରୁଣୋ ନବାଙ୍କୁରଣାଳିକାମିବ କର୍ପୂରକେତକୀକଳିକାଂ କର୍ଣ୍ଣେ
କଳୟନ୍ତୀମ୍, ଆୟତଶ୍ୱାସ ବର୍ଦ୍ଧିତତରଳତେନ ଚ ସନ୍ତାପଭସ୍ମପଲାସ୍ୱ-
ମାନେନ ଦେହପ୍ରଭାବିତାନେନେବାଂଶୁକେନ ବମୁଖମାନକୁଚକଳଶାମ୍,
ଆପତତ୍ ପ୍ରଚଳଭ୍ରମର ପ୍ରତିବିମ୍ବଂ ଚ କୁଚକଳଶଯୁଗଳଂ ପ୍ରିୟାନ୍ତିକଗମନୌ-
ତ୍ସୁକ୍ୟକୃତପକ୍ଷମିବ କରତଳେନ ନିରୁନ୍ଧନ୍ତୀମ୍, ମୁହୁର୍ମୁହୁର୍ହୃଦ୍ଧର୍କଳତସ୍ୟା
ତୁଷାରଶିଳାଶାଳଭଞ୍ଜିକାମାଲିଙ୍ଗନ୍ତୀମ୍, ମୁହୁଃ କପୋଳଫଲକେନ କର୍ପୂର-
ପୁତ୍ରିକାମାଶ୍ଳିଷ୍ୟନ୍ତୀମ୍, ମୁହୁସ୍ତରଣାରବିନ୍ଦେନ ଚନନପଙ୍କପ୍ରତିକାତନାମାମୃ-
ଶନ୍ତୀମ୍, ସ୍ତନସଂକ୍ରାନ୍ତେନାମ୍ବୁମୁଖେନାପି କୁତୂହଳେନେବ ପରିବୃତ୍ୟ
ବିଲୋକ୍ୟମାନାମ୍, କର୍ଣ୍ଣପୁରପଲ୍ଲବେନାପି ସ୍ୱପ୍ରତିବିମ୍ବଶାଳ୍ପିକା ସୋତ୍କଣ୍ଠେ-
ନେବ ଚୁମ୍ବ୍ୟମାନକପୋଳଫଳକାମ୍, ହାରୈରପିମୁକ୍ତାମ୍ରୁଭିର୍ମଦନପରିବ-
ଶୈରିବ ପ୍ରସାରିତକରୈରାଲିଙ୍ଗ୍ୟମାନାମ୍, ମଣିଦର୍ପଣମୁରସିନିହିତଂ
ବିନୋଦତବ୍ୟମେତଦିତି ଜୀବିତସ୍ପର୍ଶମସ୍ୟଂ.ଶପଥଂ ଶଶିନମିବ କାରୟନ୍ତୀମ୍,
କରିଣୀମିବ ସମ୍ମୁଖାଗତପ୍ରମଦବନଗନ୍ଧବାରଣ ପ୍ରସାରିତକରାମ୍, ପ୍ରଷ୍ଠି-
ତାମିବାନଙ୍ଗାସ୍ତ୍ରଦକ୍ଷିଣବାତମୃଗାଗମନାମ୍, ମଦନାଭିଷେକବେଦିକାମିବ
କମଳବୃତଚନ୍ଦନଧବଳପୟୋଧରକଳଶାବଷ୍ଟବ୍ଧପାର୍ଶ୍ୱାମ୍, ଆକାଶକମଳି-
ନୀମିବ ସ୍ୱଚ୍ଛାମ୍ବରତଳଦୃଶ୍ୟମାନମୃଣାଳକୋମଳୋରୁମୂଳାମ୍, କୁସୁମଚ୍ଛପ

ଲେଖାମିବ ମଦନାବେଶପିଚଗ୍ଣକୋଟିକାନ୍ତଗ୍ରମ୍, ମଧୁମାସଦେବତାମିବ ଶିଶିରଦ୍ୱାରଣୀମ୍ ମଧୁକଗ୍ରମିବ କୁସୁମମାର୍ଗଣାକୁଲାମ୍, ଚନ୍ଦନଦ୍ରବଲେପନା-ମନଙ୍ଗଗ୍ରଗିଣୀମ୍ ଚ ବାଲା°, ମନ୍ମଥଜନନୀ° ଚ ମୃଣାଳୀମଭ୍ୟର୍ଥିତରୂପାର-ସ୍ପର୍ଶା° ଚ କାଦମ୍ବରୀ° ବ୍ୟଲୋକସ୍ୱକ୍ ॥

(କାଦମ୍ବରୀ, ପୂର୍ବଭାଗ—ବାଣ ଭଟ୍ଟ)

ଅଧିତ କାପି·ମୁଖେ ସଲଳ° ସଖୀ
ଫ୍ୟଧିତ କାପି ସରୋଜଦଳୈସ୍ତନୌ
ବ୍ୟଧିତ କାପି ହୃଦ ବ୍ୟଜନାନଲ°
ନ୍ୟଧିତ କାପି ହ୍ରିମ° ସୁତନୋସ୍ତନୌ ॥

( ନୈଷଧଚରିତ – ଶ୍ରୀହର୍ଷ )

ରଥପଥ-ପ୍ରହିତାନଳଦ୍ୱୈତତା°
ପ୍ରତାପ୍ୟତ ସୃଦତୀ ମଲୟାନଲେ
ତଦୁଚିତାପଭୟାତ୍ ମୃଣାଲିକାସ୍ତ-
ମିସ୍ୟ° ଭୁଜଗାସ୍ତମିବାଦତା ॥

( ନୈଷଧଚରିତ – ଶ୍ରୀହର୍ଷ )

ସ୍ତନନ୍ୟସ୍ତୋଶୀର° ଶିଥିଳତମୃଣାଳୈକ ବଳୟ°
ପ୍ରିୟାୟାଃ ସବାଧ° କମପି କମନୀୟ° ବପୁରିଦମ୍ ।
ସମସ୍ତାପଃ କାମ° ମନସିଜନିଦାଘପ୍ରସରୟୋ—
ର୍ନ ତୁ ଗ୍ରୀଷ୍ମସ୍ୟୈବଂ ସୁଭଗମପରାଦ୍ଧ° ଯୁବତିଷୁ ॥

( ଅଭିଜ୍ଞାନ ଶାକୁନ୍ତଳ—କାଳିଦାସ)

ଅବିରଳନିପତିତମଦନଶରାଦିବ ଭବଦବନାୟ ବିଶାଳମ୍
ସ୍ୱହୃଦୟମର୍ମଣି ବର୍ମକରୋତି ସଜଲନଳିନୀଦଳଜାଳମ ॥

(ଗୀତଗୋବିନ୍ଦ – ଜୟଦେବ)

ଚନ୍ଦ୍ରମାରେ ଉପଶ୍ମର କରିବାକୁ ଘେନ
ସରସୀମାନେ ହୋଇଲେ ପଦ୍ମିନୀ-ବିହୀନ ॥

(ଲବଣ୍ୟବତୀ— ଉପେନ୍ଦ୍ର ଭଞ୍ଜ)

ନୀରଜଦଳଶୟନ କରି ନିରନ୍ତର
ଜଗିଥାଇ ନିଦାଘରେ ସକାମିନୀକର ॥

( ପ୍ରେମସୁଧାନିଧି – ଉପେନ୍ଦ୍ରଭଞ୍ଜ)

ଯମୁନାନ୍ତରେ ରଥପଥ ଶ୍ରାନ୍ତରେ ଅତି ଅବଶ ହୋଇଲେ ସେ
ଯତନେ ହରକ-ଶୋଣ୍ଡ୍ରେ ନୀରଜ ଶେଯ ଶେଯାଇ ଶୋଇଲେ ସେ
ଯୁବତୀ—ଯଦୁନାଥେ ପ୍ରୀତ ରତ ସେ
ଯୁଗ ସମ ହୋଇ ଲବକ ସେ ନବ ପଲ୍ଲବେ ହୁଅନ୍ତ ବନ୍ଧୁ ସେ ॥
(ଗ୍ରନ୍ଥ ଭୂଷଣ – ଉପେନ୍ଦ୍ର ଭଞ୍ଜ)

ଏତେ ବୋଲି ମୋହ ଗଲା ଧରଣୀ ତଳେ
ଜଳ ସିଞ୍ଚି ସଖୀ ତାର ଧଇଲେ କୋଳେ ।
( ଶ୍ରୀକୃଷ୍ଣଙ୍କର ବୃନ୍ଦାବନଯାତ୍ରା—ଶିଶୁଶଙ୍କର ଦାସ)

ମୁଖେ ନୀର ସିଞ୍ଚି ଧୀରେ ଧୀରେ ବନ୍ଧୁ ଚନ୍ଦ୍ରଲେଖା ମୁଖ ବରସ
ବାବୁ ଦଇବ କେବଣ ବପଣ୍ଟଚ ବରଷା ଜଳ୍ ମଧୁମାସ
ସଘାତ, ମୋହମେଘ ତୋତେ ବୁଝିଲା
ଲୋଚନ-ନୀର କୃତରେ ବରଷନ୍ତେ କୋକିଳ ବଚନ ବାଧିଲା ॥
(ଉଷାଭିଳାଷ—ଶିଶୁଶଙ୍କର ଦାସ)

ରମଣୀ କେ ପୁଣି ଗୋଳ ଘନସାର ଦେଉଅଛି ତାର ହୃଦରେ
ରାଜୀବ ନାଳ ମାଳ ମାଳ କରି କେ ଲମ୍ବାଇ ଦେଉଛି ଗଳାରେ
ରସିକା-ରତନ ଯତନ ପାଇଁକି
ରଚେ କେ ଶତ ଶତଦଳତଳପ ନୟନେ ଅନାଇ ପାଣିକି ॥
(ବଇଦଗ୍ଧଚନ୍ଦ୍ରାମଣି—ଅଭିମନ୍ୟୁ)

ଏତେ କହି କରି ବାଳୀ
ମୋହେଣ ପଡ଼ିଲା ଢଳି
ଧାଇଁ ଧରି ସଖୀ ସେବନ କରନ୍ତ ଆଲଟ ଚାମର ଢ଼ାଳି ॥
(ରାଧିକା ବିଳାପ—ଦେବ ଦୁର୍ଲ୍ଲଭ ଦାସ)

ଢାଳିଲାକ ଝାଡ଼ା ସଜନୀ କୋଳେ
ବଳିଲାକ ଛୁଆ ମୃଣାଳ ନାଳେ
ବୋଳିଲାକ ଉଷୀର ତା ଶ୍ରୀଅଙ୍ଗେ
ଚଳିଲାକ ଶୁଣି ଆନ ପ୍ରସଙ୍ଗେ
ଖୋଳିଲାକ ନହେ ଧଇ
ଝୁଲିଲାକ କରେ ବ୍ୟଜନ କରତେ

ଗଜଲଳନ ଅଗ୍ର ଧାଗ ॥

(ଯୁଗଳରସାମୃତଲହରୀ – କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା)

ବଂଶୀଧାରୀ ! ଷଗଫିବଣିଟି, ଜୀବନେ କଣୋଷ୍ଟ ହେ –

ବିରହରେ ସଖୀ ହୋଇଛୁ କାତର

ସର୍ବୁଁ ସରକଣି ସରେଜ ପତର

ଦେଖିଲି ସଖିର କଣ୍ଠରେ ମାତର

ଜୀବନକୁ ଅଛୁ ଧରି ହେ ॥

(ସଙ୍ଗୀତକଲ୍ପଲତା – କବିସୂର୍ଯ୍ୟବଳଦେବ ରଥ)

ଶୀତଳ ନଳିନୀ ଦଳ ଶୟନେ

ଲୋଟିଲା ବାଳା ତାପ-ପ୍ରଶମନେ

ଖର ମିହିର-କରେ ସନ୍ତାପିତ

କୁଲ୍ୟା-ସଲିଳେ ଶଫରୀ ଯେମନ୍ତ

ତେମନ୍ତ ହୋଇଲା

ଲବେ ହେଲେ ଶାନ୍ତ ଲଭି ନ କଲା

(ସତ୍ୟଦସ୍ମାନନ୍ଦ – ବ ନଃମୃର ଆର୍ଯ୍ୟ)

ବିରହ ତାପନାଶାର୍ଥେ ଶିବ ନାମୋଚ୍ଚାରଣ:—

କେ ଶିବଙ୍କୁ ଡାକେ ହୋଇ ଆତୁର

କୋଳାହଳ ନାଦେ ପୂରଛି ପୁର

କେ ବୋଲେ ମନ୍ଦ ମନ୍ଦ କରି ବିଞ୍ଚ

କେ ବୋଲେ ବେଗେ ଜଳ ସିଞ୍ଚ ସିଞ୍ଚ

କେ ହୋଇ ବିକଳ

କହୁ ସଖି ଚନ୍ଦ୍ର ଚନ୍ଦନ ଗୋଳ ॥

(ରସକଲ୍ଲୋଳ – ଦୀନକୃଷ୍ଣ ଦାସ)

ସନ୍ଧି ଦର୍ଶନରେ ବିରହିଣୀର ମିଳନପେପାଦ୍ଧ:—

ଅଙ୍ଗେଷ୍ୱାଭରଣଂ କରୋତି ବହୁଶଂ ପତ୍ରେଽପି ସଞ୍ଚାରିଣି

ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।

ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଙ୍କଳ୍ପଲୀଳାଶତ—

ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି ॥

(ଗୀତଗୋବିନ୍ଦ – ଜୟଦେବ)

ଶଶାଙ୍କ ସଂଘାତ ସଂଘାତ ସଂଘାତ ବିଶିଖ କରିବ ହୃଦରେ
ସୁମନା ସୁମନା ସୁମନା-ମଣ୍ଡନା ଜନେ ଯଶ ହେବ ଉରରେ
କୋକିଳ, ସରୁ ନ ଥିବ ଜବାରତି
ଶୋକ କରୁଥିବ ଅନାଇ ସୁମନା ସୁମନା ସୁମନା ସୁଚକ୍ଷୀ ।୩୨।

ଅନ୍ୱୟ – ରେ କୋକିଳ, ଶଶାଙ୍କ (ଚନ୍ଦ୍ର) ସଂଘାତ (ମିଳନ) ସଂଘାତ (ଆଘାତ) ବିଶିଖରୂପ ତାର ହୃଦକୁ ସଂଘାତ (ବିନାଶ) କରିବ । ସେ ସୁମନା (ପୁଷ୍ପ) ମଣ୍ଡନା ସୁମନା (ଆନନ୍ଦମନା) ସୁମନା (ପଣ୍ଡିତା) ଜନେ ମୋ ଉରରେ ଯଶ ହେବ । ତାର ଜନ ରତି ସରୁ ନ ଥିବ । ସେ ସୁଚକ୍ଷୀ (ଚନ୍ଦ୍ରିକା) ସୁମନା (ପ୍ରିୟା) ସୁମନା (ପ୍ରୀତିଯୁକ୍ତା) ସୁମନା (ମାଳତୀ ଫୁଲ)କୁ ଅନାଇ ଶୋକ କରୁଥିବ ।

ଅର୍ଥ – ରେ କୋକିଳ, ସେ ଚନ୍ଦ୍ରଙ୍କର ମିଳନ (ରୋହିଣୀ ଚନ୍ଦ୍ରର ପ୍ରଣୟ) ଦେଖିଲାମାତ୍ରେ ତାର ହୃଦୟରେ ଆଘାତ ପାଇବ ଓ ସେ ଦୁଃଖ ତାକୁ ଶରରୂପ ବିନାଶ କରିବ । ସେ ପୁଷ୍ପମଣ୍ଡନା ହର୍ଷମନା ଓ ସୁପଣ୍ଡିତା ସତେ କଣ ମୋ ଉରରେ ଯଶ ହେବ ଅର୍ଥାତ୍ ମୋ ଉରମଣ୍ଡନା ହୋଇ ମୋତେ ଯଶସ୍ୱୀ କରାଇବ ? ମୋତେ ଚନ୍ତାକରି ତାର ଜନରତି ସରୁ ନ ଥିବ । ସେ ମିଳନ ଆଶାରେ ତାର କୁଚ ଓ ଗଣ୍ଡଦେଶକୁ ଚର୍ଚ୍ଚ କରୁଥିବ । ମୋ ପ୍ରୀତିଯୁକ୍ତା ପ୍ରିୟତମା ରାଧା ମାଳତୀଫୁଲକୁ ଦେଖି ବିପରୀତ ରତି ମନେ ପକାଇ ଦୁଃଖ କରୁଥିବ ।

ବିରହିଣୀର ଅଙ୍ଗସଙ୍ଗ ଲାଗି ବିରହୀର ବ୍ୟାକୁଳତା:—

ଯିବ ସହସ୍ର ଜନ୍ମେ କି ପାଶୋରି
ଅମୃତରୁ ପ୍ରିୟା ବାଣୀ ମଧୁରି ।
ଆଉ ଭେଟିବି ନୋହୁଛୁ ପରତେ
ଭେଟ ହେବା ଉପାୟ ଅଛୁ ଏତେ ।
ପୁଣି ବିରହ-ଅନଳେ ଦହନ
ହୋଇଲା ଏ ମୋହର ତନୁ ବହନ ।
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାଇଲା କାନ୍ତା ସନ୍ନିଧାନ ।

କସ ବୋଲି ବାଳା କରନ୍ତା ଦୃଷ୍ଟି
ତହିଁ ପରେ ହୁଅନ୍ତା ସୁଧା ବୃଷ୍ଟି ।
ହୋଇ ମୂର୍ତ୍ତିମନ୍ତ ମୁଁ ସୁହିଁ ମୁଖ
କର ଯୋଡ଼ି ଜଣାନ୍ତି ସବୁ ଦୁଃଖ ।।
(ଲାବଣ୍ୟବତୀ—ଉପେନ୍ଦ୍ର ଭଞ୍ଜ)

ବିରହିଣୀ ଚନ୍ଦ୍ରତାଃ—

କୃଷ୍ଣ ବିହୁନେ ସେହ୍ନ ମତ ଗୋପୀ
ଚନ୍ଦ୍ରା ରତ୍ନାକରେ ହୋଇଲେ ତାପୀ ।।
(ମଥୁରାମଙ୍ଗଳ - ଭକ୍ତଚରଣ)

ବିରହିଣୀ ପକ୍ଷରେ ଉବସର ସ୍ଥୂଳତାଃ—

ତାଂ ଜାନୀଥା ପରିମିତକଥାଂ ଜୀବିତଂ ମେ ଦ୍ୱିତୀୟଂ
ଦୂରୀଭୂତେ ମୟି ସହଚରେ ଚକ୍ରବାକୀମିବୈକାମ୍ ।
ଗାଢୋତ୍କଣ୍ଠାଂ ଗୁରୁଷୁ ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଳା
ଜାତଂ ମନ୍ୟେ ଶିଶିର-ମଥିତାଂ ପଦ୍ମିନୀ ବାନ୍ୟରୂପମ୍ ।।
(ମେଘଦୂତ—କାଳିଦାସ)

ବାସରେ ଜନ୍ମେ ସଜସବେଜ ଯେ
ବାସରେ ତା ପାଶେ ଭ୍ରମ ଉଦ୍ଭୁଜେ ।
ବାସରେ ସ୍ମର କରଇ ବଶ୍ୱର
ବାସରେ ଯୁଗ ନୋହୁ ପଞ୍ଚଶର
ବିନାଶିଲେ ପୁଣ
ବିନାଗତରେ ତ ଗଲା ଜୀବନ ।।
(ବୈଦେହୀଶବିଳାସ—ଉପେନ୍ଦ୍ର ଭଞ୍ଜ)

ମାଳତୀ ଫୁଲ ଦର୍ଶନରେ ଉପସ୍ଥିତ ରତିର ସୂଚନାଃ—

ତନେ ଯେ ବୁଝି ସୁମନାମାଳାକୁ
ଶ୍ରୀକରେ ଦେଇ ବୋଇଲା ବାଳାକୁ
ତୋର ମୋର ଆଜଠାରୁ ମାଳତୀ
ହୋଇ ନ କଲା ସେ ବଦନ ପୋତି
କେଶୁଁ କୁଟୁଣୀକ
ଦେଖାଇ ବୋଇଲା ଏ ନାମେ ଡାକ ।।
(ଲାବଣ୍ୟବତୀ — ଉପେନ୍ଦ୍ର ଭଞ୍ଜ)

ଅନ୍ୟାନ୍ୟ କାବ୍ୟମାନଙ୍କରେ ବିପରୀତ ରତିର ବର୍ଣ୍ଣନା: –

ଚରସି ମୁଗ୍ଧରେଣୁପନ୍ଦତନ୍ଧାରେ ଘନ ଇବ ତରଳବଳାକେ
ତଡ଼ିଦିବ ପୀତେ ! ରତିବିପରୀତେ ରାଜସି ସୁକୃତବିପାକେ ॥
(ଗୀତଗୋବିନ୍ଦ – ଜୟଦେବ)

ଉରସି ନିପତିତାନାଂ ସ୍ରସ୍ତଧମ୍ମିଲ୍ଲକାନାଂ
ମୁକୁଳିତନୟନାନାଂ କିଞ୍ଚିଦୁନ୍ମୀଲିତାନାମ୍ ।
ଉପରି ସୁରତଖେଦସ୍ୱିନ୍ନଗଣ୍ଡସ୍ଥଳାନାଂ
ମଧୁରମଧୁ ବଧୂନାଂ ଭାଗ୍ୟବନ୍ତଃ ପିବନ୍ତି ॥
(ଶୃଙ୍ଗାରଶତକ—ଭର୍ତ୍ତୃହରି)

ଗୃହିଣୀ ସମ୍ମୁଖରେ ନ ମୋହ ରମା କ୍ଷୋଭରେ
ବିପରୀତ ମନୋଭବରେ ଯେ ନ ବିଭବରେ
କଲ୍ୟାଣୀ କୋଳ ଗୃହରେ ଥିଲେ ଯେ ଅଛି କୁହରେ
ସେବା ଜଣନାହିଁ ହରେ ତାହା ଦେହରେ
ଏ ରସେ ଯେ ନର୍ତ୍ତକ ହେ,ର
ଧନ୍ୟ ଧନ୍ୟ ତାର ଜୀଇବାର ପ୍ରହରେ ॥
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ତପପମସ୍ତ ଜଡ଼କର କରର ରଣରଣ ରଣ ରଚନ
ନୟନ ତପ ପଫଳ କରଣରେ ମଦନମଦ ବରଧନ
ଜଳଦ, ଉଲଟ ରସ ସରଜନ
ଅକଥନ ରସ ଜନକ ଏସନ ଚରଣ କଟକ ମଣ୍ଡନ ॥
(ଅବନାରସତରଙ୍ଗ—ଉପେନ୍ଦ୍ର ଭଞ୍ଜ)

କମଳାନନୀରେ ସଦା ବିପରୀତ ହେବାରେ ମୁହିଁ କାମ୍ୟକ
କଣବ ଶରଣ କ ସେବା ଗ୍ରନ୍ଥରେ ବୋଲ ସଖି ଇଙ୍ଗିତକ ॥
(କଳାକଉତୁକ—ଉପେନ୍ଦ୍ର ଭଞ୍ଜ)

ଝୁମି ଝୁମି କାମମଦ ଖେଳେ
ଝୁଲୁ ଝୁଲୁ ନାସା ଭୂଷା ଲେଳେ
ଝଲ ଝଲ ଝଟକଲ ବେଳେ
ଝଙ୍କି ନେଲ ସ୍ୱର୍ଗ-ସୁଖ-ମାର୍ଗକୁ ସୁସାରେ ॥
(ସଙ୍ଗୀତ କଳ୍ପଲତା – କବିସୂର୍ଯ୍ୟ ବଳଦେବ ରଥ)

ବିପରୀତ ରତି କାଳେ ବକ୍ଷସ୍ଥଳେ
କେଶପାଶ ଫିଟି କେତେ ଥିବ ଖେଳେ ।
ମୁକୁଳିତ ନେତ୍ର ଲଜ୍ଜାସୁଖ ବଶେ
ଦରବିକଶିତ ହାସ ଗଣ୍ଡଦେଶେ ।
ସ୍ୱେଦବିନ୍ଦୁ ଥିବ ସେହି ନବବାଳୀ-
ଶୋଣାଧର ମଧୁ ପିଏ ଭାଗ୍ୟଶାଳୀ ।।
(ଭକ୍ତିହରି ଦୂଷିତ – ରାଧାମୋହନ ରାଜେନ୍ଦ୍ର ଦେବ)

ଶିଖିକଳାପ କୁନ୍ତଳା　　　　କେଉଁ ବାମ କେଳିକଳା-
କୁଶଳା ପୂର୍ବ ସ୍ୱାସ୍ଥ୍ୟ କରି ରହିଲ
ଶଙ୍କର କର ଡମ୍ବରୁ　　　　ଘୁରୁକଟି ଘୁଙ୍କିବାରୁ
ଘୁଙ୍କୁ ଘୁଙ୍କୁ କାନ୍ତ ଚନ୍ଦ୍ର ତରଳିଗଲ,
ଶ୍ୟାମଘନେ ଚଞ୍ଚଳା ପରି
ଶ୍ୟାମ ଉପରକୁ ଶୋଭି ପାଇଲ ଗୋରି ।।
(ଶ୍ୟାମରସୋତ୍ସବ – ବ୍ରଜନାଥ ବଡ଼ଜେନା)

ମୁନିମନ ମୋହନୀ　　　　ମହେଶଭ୍ରୁଡ଼ ଘେନି
ବିପରୀତରେ ରତ ହୋଇ
ମନ୍ମଥରେ ଲଢ଼ାଇ　　　　କରି ତାର ବଢ଼ାଇ
ଛଡ଼ାଇ ଧଏ ଘଉଡ଼ାଇ
ରେ ବଲାହକ !
ମାନସ ଭଲ ସେ ମନ୍ଥାଇ
ମଟି କିଙ୍କିଣୀକ ବଜାଇ
ମୋତ ବରଣି ସଙ୍ଗେ　　　　ନଚାଇ କେତେ ରଙ୍ଗେ
ମୋ ନେତ୍ର ସାର୍ଥକ କରାଇ ।।
(ବଲାହକ ଚଉତିଶା – ବ୍ରଜରାଜ ସିଂହଦେବ)

ହେବନି ତା ମୁଖ ବନଜ ବନଜ ବନଜ ବାଛଲା ପରାଏ
ହଂସଗତି କରିବାକୁ ଶିବ ଶିବ ଶିବ ଗୁଣୁଥିବ ହୃଦପ୍ୱେ
କୋକିଳ, ହେଲାବଣି ପାଶେ କହିବ
ହେଲେ ନାଶୁଅଛୁ ଦର୍ପକ ଦର୍ପକ ଏଥିରୁ କେ ମୋତେ ତାରିବ ।୮୩।

ଅନ୍ୱୟ – ରେ କୋକିଳ, ତା ବନଜ (ପଦ୍ମ) ମୁଖ ବନଜ (ଅରଣ୍ୟଜାତ) ବନକ (ଝଞ୍ଜଫଳ) ପ୍ରାପ୍ତ ହେବନି । ସେ ହଂସଗମନା କାମଜ୍ୱଳାରୁ ମୁକ୍ତ ଲଭିବାକୁ ଶିବ (ମହାଦେବ) ଶିବ (ଚନ୍ଦନ) ଓ ଶିବ (ଜଳ) ସୁଶ୍ରୂଷିବ (ଲୋଡ଼ୁଥିବ) । ମୋ ହେଲାବଣ୍ଟା ପାଶରେ ଏତକି କହିବ ଯେ ମୋତେ ଦର୍ପକ (ଦର୍ପକାରୀ) ଦର୍ପକ (କନ୍ଦର୍ପ) ନାଶୁଅଛୁ ମୋତେ ଏଥିର୍ କିଏ ବା ତାରିବ ।

ଅର୍ଥ – ରେ କୋକିଳ, ତାର ପଦ୍ମମୁଖ ଜଙ୍ଗଲି ଝଞ୍ଜଫଳ ପରି କଳା ପଡ଼ିଯିବନି । ମୋ ହଂସଗମନା ରାଧା କାମତାପନାଶାର୍ଥେ ଶିବଙ୍କୁ, ଚନ୍ଦନକୁ ଓ ଜଳକୁ ଲୋଡ଼ୁଥିବ । ଦର୍ପକାରୀ କନ୍ଦର୍ପ ମୋତେ ନାଶ କରୁଛି । ହେଲାବଣ୍ଟା ରାଧା ପାଶରେ ଏତକ କହିବ ଯେ, ତା ବ୍ୟତୀତ ଆଉ ବା କିଏ ମୋତେ ଏ କାମ ଯନ୍ତ୍ରଣାରୁ ରକ୍ଷା କରିବ ।

ନାୟିର ମୁଖ ପଦ୍ମ ସହ ତୁଳନୀୟ:—

ସର୍ବପଦ୍ମପ୍ରଭାସାରଃ ସମାହୃତ ଇବ କ୍ୱଚିତ୍
• ତଦାନନଂ ବିଭାତ୍ୟସ୍ୟା ତାମଭୂତୋପମା ବଧୂଃ ॥
(ଦଶକୁମାରଚରିତ— ଦଣ୍ଡୀ)

ତ୍ରାଣକର୍ତ୍ତ୍ରୀ ଓ ସୁଖଦାୟିନୀ ନାୟିକା ବରଣର କାମ୍ୟ:—

ନ ଧନଂ ନ ଚ ରାଜ୍ୟସମ୍ପଦଂ
ନହି ବିଦ୍ୟାମିଦମେକମର୍ଥୟେ ।
ମୟି ଧେହି ମନାଗପି ପ୍ରଭୋ !
କରୁଣାଭଙ୍ଗିତରଙ୍ଗିତଦୃଶାମ୍ ॥
(ରସଗଙ୍ଗାଧର – ପଣ୍ଡିତରାଜ ଜଗନ୍ନାଥ)

ବିଚକ୍ଷଣେ ! ପଦ୍ମିନି ! ପଦ୍ମଗନ୍ଧେ !
ପ୍ରମତ୍ତ-ମାତଙ୍ଗଗତେଽନ୍ମୁରକ୍ତେ !
କୃପାମ୍ବଜେ ! ଜୀବୟ ମାଂ ମନୋଜ୍ଞେ !
ମନୋଜ-ବାଣ-ବ୍ରଣ-ଖିନ୍ନଗାତ୍ରମ୍ ॥
(ଚୌରପଞ୍ଚାଶିକା—ବିଲ୍ହଣ)

ସୁଶୀଳା ଅବଳା ତନୁକୋମଳା
କୃପଜା ପଦ୍ମିନୀ ରସକୁଶଳା

ମତ୍ତଦ୍ୱିରଦଗାମିନି ! ଅଳସୀ
ଅନୁରଗିଣୀରେ ! କୁଞ୍ଚିଳକେଶି !
କାମବାଣେ ଖିନ୍ନ
ମୋ ଜୀବ ରଖ ରମଣୀରତନ ॥
(ଇଚ୍ଛାବତୀ—ଧନଞ୍ଜୟ ଭଞ୍ଜ)

ଫେଡ଼ି ବସନ ସୁତନୁ ତନୁରେ କି ମୋ ତନୁ ସଙ୍ଗେ ମିଶାଇବ
ପଣହାସେ ରସି ରସିକାବରଙ୍କୁ ଥରେ ଥରେ କି ହସାଇବ
ଚନ୍ଦ୍ରମା—ତାଙ୍କୁ କେବେ ନ ଭୁଷାଇବ
ଦୁଃଖ ନିକର କରକାଦନ୍ତୀ ଘେନି ସୁଖସାଗରେ ଭସାଇବ ॥
(ପ୍ରେମସୁଧାନିଧି – ଉପେନ୍ଦ୍ର ଭଞ୍ଜ)

ପଟ୍ଟନେଟ ଖଣ୍ଡସାଟ    ଘଟଣନେତ୍ରା ମୁଁ ଘଟ
ତୁହ କି ଜୀବନ କହ କହ
ତୁ ପଣତ ଚନ୍ଦ୍ରମା    ଚକୋର କରେ ମୁଁ ଗମା
ମୁଁ ସ୍ମୃତକ ତୁ କି ବାଣବାହ
ଜୀବବନ୍ଧୁ !
ମୁଁ କି ବନ ତୁ ବସନ୍ତଶିଖି
ବିକଶିତ ଅରବିନ୍ଦ    ତୁ କି ମୁଁ ଷେଖୀ ମିଳନ୍ଦ
ମୁଁ ମୀନ କି ତୁ ଗଣ୍ଡର ବାଣ ॥
(ଚନ୍ଦ୍ରକଳା – କବିସୂର୍ଯ୍ୟ)

ଗୃହ ଲକ୍ଷ୍ମୀ ମୋର    ମୋ ନେତ୍ରର ମଣି
ଅମୃତ ଅଞ୍ଜନ ସଗ
ସେ ଅଙ୍ଗ ପରଶେ    ମଣଇ ଚନ୍ଦନ
ଦେହେ ବୋଳା ହେଲ ପରି ।
ସେ ଭୁଜ ମୋ କଣ୍ଠେ    ମୁକୁତାର ହାର
ପ୍ରାୟ ସ୍ନିଗ୍ଧ ସୁଶୀତଳ
ତ୍ରିସ୍କାର ସବୁହିଁ    ପ୍ରୀଡକର ଏକା
ବିରହ କରେ ବିକଳ ॥
(ଉତ୍ତରରାମ ଚରିତ – ମଧୁସୂଦନ ରାଓ)

ଶରଦଚନ୍ଦ୍ରମୁଖୀ ମୁ କ୍ଷୀଣ ହେବା ଦେଖି
ବାଦେ ଖିଆଲ ଯୋଖି ମାରେ ମାରଣା ଶର
ଶରଣ ରୁ ନବୀନା ବନା କରେ ସୁମନା
ମନାଶିବ ମୋ ଶିବ ବସିବାକୁ ପାଶର ॥
(ସଙ୍ଗୀତ ଶିରୋମଣି—ନରଞ୍ଜନ କର)

କ୍ଷମାସିନ୍ଧୁ ଥାଉ ବୃଷାଙ୍କ ବୃଷାଙ୍କ ବୃଷାଙ୍କ ବୃଷାଙ୍କ ଦହୁଛି
କ୍ଷିତିମଣ୍ଡନା ପାଶେ ଏତେ କହିବୁ କର ଧରି ତୋତେ କହୁଛି
କୋକିଳ, କ୍ଷମ ହେ ଅଗମ ବ୍ରଜକୁ
କ୍ଷେମେ ରକ୍ଷା କର ଉପଇନ୍ଦ୍ର, ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ । ୩୪ ।

ଅନ୍ୱୟ—ରେ କୋକିଳ ମୋ କ୍ଷମାସିନ୍ଧୁ ଥାଉ ଥାଉ ବୃଷାଙ୍କ (ଶିବ), ବୃଷାଙ୍କ (ମୟୂର) ବୃଷାଙ୍କ (ଜଳ) ଓ ବୃଷାଙ୍କ (କାମଦେବ ଅଙ୍କସ୍ଥିତା ରତିନାୟିକା) ମୋତେ ଦହୁଛନ୍ତି । ତୋତେ କର ଧରି କହୁଛି ତୁ ଏତିକି ମାତ୍ର ମୋ କ୍ଷିତିମଣ୍ଡନା ପାଶରେ କହିବୁ । ଅଗମ (ଦୁର୍ଗମ) ବ୍ରଜକୁ ତୁ ଯାତ୍ରା କର । ହେ ଉପଇନ୍ଦ୍ର (ବିଷ୍ଣୁ) ତୁମେ ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ କ୍ଷେମେ (ମଙ୍ଗଳରେ) ରଖ ।

ଅର୍ଥ—ରେ କୋକିଳ, ମୋ କ୍ଷମାସାଗର ରାଧା ଥାଉ ଥାଉ ମୋତେ ଶିବ (ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି-ଦର୍ଶନରେ କାମୋଦ୍ରେକ) ମୟୂର (ରାଧାର କେଶ ମୟୂର ପୁଚ୍ଛ ସମ—ଦର୍ଶନରେ ରାଧାର ସ୍ମୃତି), କାମଦେବ ଅଙ୍କ ସ୍ଥିତା ରତି ନାୟିକା (ରତିଦେବୀ ଦର୍ଶନରେ ରାଧା ସହିତ ରତି କରିବାକୁ ଇଚ୍ଛା) ଓ ଜଳ (ଏଠାରେ ଯମୁନା ଜଳ ସନ୍ଧିରେ ବହୁ ପ୍ରକାର ଓ ବହୁବାର ଜଳକ୍ରୀଡ଼ା ସମ୍ପାଦିତ ହୋଇଛି) ମୋତେ ଦହନ କରୁଛନ୍ତି । ପର୍ବତ ଓ ଘନବୃକ୍ଷଲତା ପରିବେଷ୍ଟିତ ଦୁର୍ଗମ ବ୍ରଜକୁ ତୁ ଶୁଭଯାତ୍ରା କର । ହେ ବିଷ୍ଣୁ ! ତୁମେ ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜକୁ ମଙ୍ଗଳରେ ରଖ ।

ଶିବ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ଓ ତାହା ଦର୍ଶନରେ ବିରହୀର ଚିନ୍ତା:—
ଈଶ୍ୱର କଲେ ପାଇବି
ଈସତେ ଦୁଃଖ ଦହିବି
ଈଶ୍ୱରୀ ତାଙ୍କ ଅର୍ଦ୍ଧାଙ୍ଗ ହେଲି ଭଲ ବାଲା ଅଙ୍ଗେ ଜଡ଼ି ରହିବି ।

ଇନ୍ଦ୍ରନୀଳସ୍ଥ ଶ୍ରୀମୁଖେ ଚକ୍ଷୁକ ଧରି ସବୁ ଚୂମ୍ବ ଲଭୁବ
ଲକ୍ଷଣ ଲକ୍ଷଣ ବାଣେ ବନ୍ଧ ପକା ଦୋଷ କରୁଛୁ ମୁଁ ସହୁବ ॥
(ଚୌପଦୀଚନ୍ଦ୍ର—ଉପେନ୍ଦ୍ର ଭଞ୍ଜ)

ଅଶୁଭ ନାଶ କରି ଶୁଭରେ ଦୀର୍ଘାୟୁ କରି ରଖିବା ଲାଗି ବହ୍ନିଙ୍କ ସ୍ତବଃ—

ଅଗ୍ନେ ନକ୍ଷତ୍ରଂ ଅଜରମ୍
ଆ ସୂର୍ଯ୍ୟଂ ରୋହୟସ୍ୱେ ଦିବେ ।
ଦଧଜ୍ ଜ୍ୟୋତିର୍ ଜନେଭ୍ୟଃ ॥
ଅଗ୍ନେ କେତୁର୍ ବିଶାମ୍ ଅସି
ପ୍ରେଷ୍ଠଃ ଶ୍ରେଷ୍ଠଃ ଉପସ୍ଥସତ୍
ବୋଧା ସ୍ତୋତ୍ରେ ବୟୋ ଦଧତ୍ ॥
(ଋଗ୍‌ବେଦ)

[ଅର୍ଥ—ହେ ତେଜସ୍ୱିନ୍ ! ତୁମେ ଅଗଣିତବସ୍ତୁସ୍ଥ ତାରକା ଓ ଗଗନପ୍ରଦକ୍ଷିଣକାରୀ ତଥା ଜୀବଜଗତକୁ ଆଲୋକ ବିତରଣକାରୀ ସୂର୍ଯ୍ୟଙ୍କୁ ସୃଷ୍ଟି କରିଛ । ହେ ତେଜସ୍ୱିନ୍ ! ତୁମେ ହିଁ ଜନତାର ଆଲୋକ । ତୁମେ ସର୍ବଶ୍ରେଷ୍ଠ, ସର୍ବପ୍ରେଷ୍ଠ ତଥା ସର୍ବଦା ଆମ ନିକଟରେ ବିଦ୍ୟମାନ ।

ହେ ପ୍ରଭୋ ! ତୁମେ ସ୍ତୁତିକାରୀଙ୍କୁ ମନେ ରଖ ଓ ତାଙ୍କୁ ନବଜୀବନ ଦାନ କର ]

That God, which ever lives and loves
One God, one law, one element,
And one far off divine event,
To which the whole creation moves.
( Lord Alfred Tennyson)

ସାନ୍ଦ୍ରାନନ୍ଦପୁରନ୍ଦରାଦିଦିବିଷଦ୍‌ବୃନ୍ଦୈରମନ୍ଦାଦରା—
ଦାନମ୍ରୈର୍ମୁକୁଟେନ୍ଦ୍ରନୀଲମଣିଭିଃ ସନ୍ଦର୍ଶିତେନ୍ଦିବରମ୍ ।
ସ୍ୱଚ୍ଛନ୍ଦଂ ମକରନ୍ଦସୁନ୍ଦରଗଲନ୍ମନ୍ଦାକିନୀମେଦୁରଂ
ଶ୍ରୀଗୋବିନ୍ଦପଦାରବିନ୍ଦମଶୁଭସ୍କନ୍ଦାୟ ବନ୍ଦାମହେ ॥
(ଗୀତଗୋବିନ୍ଦ—ଜୟଦେବ)